ଆପଣ ଜାଣନ୍ତି କି ଭାରତ
ବର୍ଷରେ ୫୦,୦୦୦ ପ୍ରକାରର
ଧାନ ରହିଛି ?



ପରି ଶଷ୍ୟ ମାନଙ୍କ ସମ୍ପର୍କରେ ସବିଶେଷ ବିବରଣୀ ପାଇଁ
ଢ଼ନ୍ତୁ:

# ବସୁଧା

ଏକ ସ୍ୱତନ୍ତ୍ର ୧୬-ପୃଷ୍ଠା ସଂଯୋଜିତ କୃଷି ଜୀବନ ଓ ପରିବେଶ
ସମ୍ପର୍କରେ 'ଜହ୍ନମାମୁ': ଜୁନ୍ : ୨୦୦୨ରେ ପଢ଼ନ୍ତୁ ।

କ୍ରୀଡା ଆଲେଖ୍ୟ ପହେଲି କାର୍ଯ୍ୟକ୍ରମ ଗଳ୍ପ ସଂଭାର

Sponsored by




ପରିବେଶର ମିତ୍ର ହୁଅନ୍ତୁ !
ବିଶ୍ୱପରିବେଶ ଦିବସ, ଜୁନ୍: ୫ ପାଳନ କରନ୍ତୁ ।

A 
ACTIVE

B  
BUZZ BOSS

C 
CADET DX

D 
DEVIL DX

E 
ELEPHANT

F 
FISH

G 
GIRAFFE

H 
HEN

I 
INSECT

J 
JOKER

K 
KIDD DX

L 
LI'L ANGEL
LAMBADA LIMBO

M 
MISSILE MISS INDIA Jr

N 
NEST

O 
ORANGE

P 
PIRANHA

Q 
QUEEN Jr

R 
ROBO COP

S  
SPARKY SALSA

T 
TERMINATOR




HTA 5979 2001

V W

The largest range of kids bikes

**HERO CYCLES**

THE ABC OF CYCLING

ବର୍ଷ : ୩୪ ମଇ ୨୦୦୨ ଅଙ୍କ : ୩୯



ଭାରତୀୟ କିମ୍ବଦନ୍ତୀ ...୨୫



ବେତାଳ କଥା ...୧୯



ମାୟା ସରୋବର ...୧୧



ବିଘ୍ନେଶ୍ୱର ...୪୫



## ସୂଚୀପତ୍ର




**SUBSCRIPTION**

**For USA and Canada**
**Single copy $2**
**Annual subscription $20**
***Remittances in favour of Chandamama India Ltd.***
**to**
**Subscription Division**
CHANDAMAMA INDIA LIMITED
No. 82, Defence Officers Colony,
Ekkatuthangal, Chennai - 600 097
E-mail : subscription@chandamama.org

**Gift Subscriptions**
**By Air Mail to All Countries other than India**
**Twelve issues Rs. 900**
**Within India Rs. 120**
**by book post**
Send your remittances by Demand Draft or Money Order favouring 'Chandama India Limited'



ସଂସ୍ଥାପକ
ବି. ନାଗି ରେଡ୍ଡି ଓ ଚକ୍ରପାଣି

# ଶାନ୍ତି ଭବତୁ

ଭାରତବର୍ଷ ହିନ୍ଦୁ ବୌଦ୍ଧ, ଜୈନ, ଶିଖ, ପରି ଛଅଟି ମୁଖ୍ୟ ଧର୍ମର ପୀଠ । ପ୍ରଥମ ଶତାବ୍ଦୀ ବେଳକୁ ଭାରତ ବର୍ଷରେ ଖ୍ରୀଷ୍ଟୀୟାନ ଧର୍ମ ପ୍ରବେଶ କଲା । ଏହି ଧର୍ମ ହିଁ ପରେ ପରେ ବେଶ୍ ତିଷ୍ଠି ରହିଲା । ଇସ୍‌ଲାମ ଧର୍ମ ଭାରତ ବର୍ଷକୁ ଏହାର ପାଞ୍ଚଟି ଶତାବ୍ଦୀ ପରେ ଆସିଛି ଓ ଉକ୍ତ ଧର୍ମର ଲୋକେ ପ୍ରଥମେ ବଣିକ ଓ ପର୍ଯ୍ୟଟକ ଭାବେ ଭାରତ ମାଟିରେ ପାଦ ଦେଲେ ଓ ପରେ ପରେ ସେମାନେ ପାଲଟି ଗଲେ ଆକ୍ରମଣକାରୀ । ଏପରିକି ମୁସ୍‌ଲିମ୍ ଲୋକେ ହେଲେ ଆମର ଶାସନ କର୍ତ୍ତା, ଦୀର୍ଘ ପାଞ୍ଚ ଶତାବ୍ଦୀ ଧରି । ସେମାନଙ୍କ ମଧ୍ୟରେ ଥିଲେ ସମ୍ରାଟ ଆକବର ଯେ 'ଦିନ୍ ଇଲାହି' ଗ୍ରନ୍ଥ ପ୍ରବର୍ତ୍ତନ କରିଥିଲେ । ଏହି ଗ୍ରନ୍ଥ ଅନୁଶାରେ ପ୍ରତ୍ୟେକ ଲୋକର ସ୍ୱାଧୀନତା ରହିଛି, ନିଜ ନିଜର ଧର୍ମ ବାଛି ନେଇ, ସ୍ୱାଧୀନତାର ସହିତ ନିଜ ନିଜର ଧର୍ମ ଓ ବିଶ୍ୱାସ ର ଲାଳନ ପାଳନ କରିବା ପାଇଁ । ତାଙ୍କ ସମୟରେ ଶିଖ ଧର୍ମର ଅଭ୍ୟୁଦୟ ଘଟିଲା ।

ସମଗ୍ର ଭାରତବାସୀ ଏକଜୁଟହୋଇ ସ୍ୱାଧୀନତା ପାଇଁ ଲଢ଼େଇ କରିବାକୁ ବାହାରିଲେ । ଦୁର୍ଭାଗ୍ୟବଶତଃ ଧର୍ମନାମରେ ଭାରତବର୍ଷ ସ୍ୱାଧୀନତା ପୂର୍ବରୁ ଖଣ୍ଡ ବିଖଣ୍ଡିତ ହେଲା । ଭୂଖଣ୍ଡର ଦାବିରେ ଭାରତ ଓ ପାକିସ୍ଥାନ ମଧ୍ୟରେ ଯୁଦ୍ଧ ଲାଗି ରହିଲା । ଆମ ଦେଶର ନେତୃବୃନ୍ଦ ଏପରି ଏକ ସମ୍ବିଧାନର ପ୍ରଣୟନ କଲେ, ଯେଉଁଥିରେ ଭାରତବର୍ଷ କୁ ଏକ ଧର୍ମ ନିରପେକ୍ଷ ରାଷ୍ଟ୍ର ଭାବେ ବର୍ଣ୍ଣନା କରାଯାଇଛି । ପଞ୍ଚାବନ ବର୍ଷର ସ୍ୱାଧୀନତା ପରେ ବି ଧର୍ମନାମରେ ଆମର ସଂଘର୍ଷର ଶେଷ ହୋଇ ନାହିଁ । ସମ୍ପ୍ରତି ଗୁଜରାଟର ଦୁଃଖଦ ନର ସଂହାର ଏହାର ଏକ ପ୍ରକୃତ ପରିଚୟ । ଏହା ଆମର ମୁଣ୍ଡକୁ ତଳକୁ କରିଦେଇଛି । ଆମେ ଭୁଲି ଯାଇଛୁ, ଜାତିର ଜନକ ମହାତ୍ମାଗାନ୍ଧୀ ଗୁଜୁରାଟରେ ଜନ୍ମ ଗ୍ରହଣ କରିଥିଲେ, ଯେ ସତ୍ୟ, ଅହିଂସା, ପାଇଁ ପ୍ରାଣ ଦେଇଥିଲେ ।

ଜହ୍ନମାମୁ- ଏହାର କାହାଣୀ ଓ ସାହିତ୍ୟ ମାଧ୍ୟମରେ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ସମ୍ପର୍କରେ ସଚେତନତା ସୃଷ୍ଟି କରିଛି । ଆମେ ଆଶା କରୁ ଧର୍ମ ନାମରେ ଚାଲିଥିବା ବିଦ୍ୱେଷର ଅନ୍ତହେବ ଓ ଶାନ୍ତି ଚିରକାଳ ବିଦ୍ୟମାନ ରହିବ ।

---

ସଂପାଦକ : ବିଶ୍ୱମ

**Visit us at : http://www.chandamama.org**







'ଭାରତ ବୀରପୁରୁଷ' ପହେଳି ପ୍ରତିଯୋଗିତା ରେ ଭାଗ ନିଅ ଓ ପ୍ରଚୁର ପୁରସ୍କାର ପାଅ

# ଭାରତର ବୀର ପୁରୁଷ-୮

ଭାରତର ଇତିହାସ ବହୁ ବୀରଙ୍କ ଜୀବନୀରେ ଭରପୁର । ଏ ମଧ୍ୟରୁ ତୁମେ କେତେ ଜଣ ବୀର ପୁରୁଷଙ୍କୁ ଚିହ୍ନି ପାରିବ ?

ତିନିଜଣ ସଠିକ୍ ଉତ୍ତର ଦାତାଙ୍କୁ ମିଳିବ ବାଇସାଇକେଲ.*



1 ସେ ମାତ୍ର ୧୬ ବର୍ଷ ବୟସରେ ଖ୍ରୀଷ୍ଟପୂର୍ବ ୬୦୬ରେ ଥାନେଶ୍ୱର ର ରାଜା ହେଲେ । ସେ ଥିଲେ ବେଶ୍ ପରପୋକାରୀ ଓ ପ୍ରଜାବତ୍ସଳ । ସେ କିଏ ?

..........................................................................

2 ସେ ବିଜୟ ନଗରମ୍‌ର ଶ୍ରେଷ୍ଠ ରାଜା । ସେ ୧୫୦୯ ରୁ ୧୫୨୯ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ସେ କିଏ ?

..........................................................................

3 ସେ ହେଉଛନ୍ତି ବିଖ୍ୟାତ ମରହଟ୍ଟା ଶାସକ ଯେ 'ଛତ୍ରପତି' ଉପାଧିରେ ଭୂଷିତ ହୋଇଥିଲେ । ଆଉ ଅଧିକ ତାଙ୍କ ବିଷୟରେ ନ କହିଲେ ବି ତୁମେ ତାଙ୍କର ନାମ କହି ପାରିବ ?

..........................................................................

4 ହଳଦୀଘାଟ ଯୁଦ୍ଧରେ ପରାସ୍ତ ହେବାପରେ ବି ମୁଁ ସମ୍ରାଟ ଆକବରଙ୍କ ପାଖରେ ଆତ୍ମ ସମର୍ପଣ କରିନଥିଲି । ମୁ କିଏ ?

..........................................................................

5 ମତେ ଶ୍ରେଷ୍ଠ ପଲ୍ଲବ ରାଜା ଭାବେ ଗ୍ରହଣ କରାଯାଏ । ମୁଁ ଚାଲୁକ୍ୟ ରାଜା ପୁଲକେଶୀ-୨ଙ୍କୁ ପରାସ୍ତ କରିଥିଲି । ମୁଁ ମହାବଳିପୁରମ୍‌ର ପ୍ରସ୍ତର ମନ୍ଦିର ତିଆରି କରିଥିଲି । ମୁଁ କିଏ ?

..........................................................................

ପ୍ରତେକଟି ପ୍ରଶ୍ନର ସଠିକ୍ ଉତ୍ତର ସୁନ୍ଦର ଅକ୍ଷରରେ ଲେଖି ପଠାଇବେ । ଏହି ପାଞ୍ଚଜଣ ପ୍ରତିଭା ପୁରୁଷଙ୍କ ମଧ୍ୟରୁ କିଏ ତୁମର ପ୍ରିୟ ଓ କାହିଁକି ? 'ମୋର ପ୍ରିୟ ପ୍ରତିଭା ପୁରୁଷ' ଦଶଟି ଶବ୍ଦରେ ଲେଖ ।

..........................................................................

..........................................................................

ପ୍ରତିଯୋଗୀଙ୍କ ନାମ: ..........................................

ବୟସ: ..........................ଶ୍ରେଣୀ: ..........................

ଠିକଣା: ..........................................................

..........................................................................

..........................................................................

ପିନ୍: ..........................ଫୋନ୍: ..........................

ପ୍ରତିଯୋଗୀଙ୍କ ଦସ୍ତଖତ ..........................................

ଅଭିଭାବକଙ୍କ ଦସ୍ତଖତ ..........................................

ଦୟାକରି ଏହି ପୃଷ୍ଠାଟିକୁ ଚିରି ନିମ୍ନ ଠିକଣାରେ ପଠାନ୍ତୁ:

**Heroes of India Quiz- 8**
CHANDAMAMA INDIA LIMITED
No. 82, Defence Officers Colony
Ekkatuthangal, Chennai - 600 097.
On/before **June 5, 2002**

ପୁରସ୍କାର ପ୍ରଦାନ କରିବେ




ବିଶେଷ ସୂଚନା

୧. ଏହି ପ୍ରତିଯୋଗିତା ୮-୧୪ ବର୍ଷ ପିଲାଙ୍କ ପାଇଁ ଉଦ୍ଦିଷ୍ଟ ।
୨. *ତିନିଜଣ ସଠିକ୍ ଉତ୍ତର ଦାତାଙ୍କୁ ଜହ୍ନମାମୁର ସମସ୍ତ ସଂସ୍କରଣ ଭିତ୍ତିରେ ବଛାଯିବ । ଯଦି କେହି ପ୍ରତିଯୋଗୀ ମୋ ପ୍ରିୟ ବୀର ପୁରୁଷଙ୍କ ସମ୍ପର୍କରେ ଏକାଧିକ ପ୍ରବେଶିକା ପତ୍ର ପଠାଉଥାନ୍ତି ତେବେ ତାହା ସର୍ବୋତ୍ତମ ଉତ୍ତର ଭିତ୍ତିରେ ଗ୍ରହଣ କରାଯିବ ।
୩. ବିଚାରକ ମାନଙ୍କର ନିଷ୍ପତ୍ତି ଚୂଡ଼ାନ୍ତ ଅଟେ ।
୪. ଏହି ପ୍ରତିଯୋଗିତା ସମ୍ପର୍କରେ ଚିଠି ପତ୍ର ଗ୍ରହଣ ଯୋଗ୍ୟ ନୁହେଁ ।
୫. ବିଜେତା ମାନଙ୍କୁ ପତ୍ର ଦ୍ୱାରା ଜଣାଇ ଦିଆଯିବ ।

# HEY PEOPLE! TELL US HOW CLOSE YOU'RE TO POPEYE AND YOU COULD WIN A POPEYE WATCH FROM DASH!




Put your knowledge on Popeye to test by ticking the right answers to the following questions and you could win an exciting Dash! watch.

1. What does Popeye do for a living? He's à
   a. Sailorman ☐ b. Tailorman ☐
   c. Cobblerman ☐

2. What's Popeye's source of strength?
   a. Roast Beef ☐ b. Hotdogs ☐
   c. Spinach ☐

3. What's Popeye's girlfriend's name?
   a. Olive Oyl ☐ b. Coconut Oyl ☐
   c. Sunflower Oyl ☐

**Now dash this contest form to:**
The Dash! Chandamama Contest,
Titan Industries Ltd, Airport Road,
Bangalore-560 017.

**My name is:** ______________________
**I am a Boy** ☐ **Girl** ☐**. I am** ________ **years old**
**My address is:** ______________________
______________________
**Tel:** ______________________
**I read Chandamama in English** ☐ **Hindi** ☐
**Others** ☐ **(Please specify)** ______________

**Rules and regulations:**
1. Judges decision is final and binding.
2. Incomplete forms will not be considered.
3. Prizes are not exchangeable in lieu of cash.
4. All entries should reach us by 15th May 2002.



Rs. 295 onwards.





# ଯେଷାକୁ ତେଷା

କାହା ମନରେ ଆଶା ସୃଷ୍ଟି କରି ତା'କୁ ହତାଶ କରିବା କୁଣ୍ଠିତ ରୁଚିର ପରିଚୟ ଦିଏ । କିନ୍ତୁ ବିକାରକୁ ଏପରି କରିବାକୁ ଭଲ ଲାଗେ । ଥରେ ସେ ବାଟରେ ଯାଉଥିବା ବେଳେ ଗୋଟିଏ ଭିକାରୀ ହାତ ପତାଇ କହିଲା: ''ମହାରାଜ, ଦୁଇ ଦିନ ହେଲା କିଛି ଖାଇନି । ଭୋକ ଲାଗୁଛି । ଗୋଟିଏ ଟଙ୍କା ଦିଅ । କିଛି ଖାଇବି ।''

ବିକାର ତା'କୁ ଗୋଡରୁ ମୁଣ୍ଡ ଯାଏଁ ଚାହିଁବା ପରେ କହିଲା, ''ତୁ ମୋତେ ମହାରାଜ ସମ୍ବୋଧନ କଲୁ । କିନ୍ତୁ ତୁ ନିଜେ ମୋତେ ମହାରାଜାଙ୍କ ପରି ମନେ ହେଉଛୁ । ତୋ ଚେହେରାରୁ ଜ୍ୟୋତି ବାହାରୁଛି । ମୁଁ ଯାହା କହୁଛି ଶୁଣ । ଯଦି ମୋ କଥା ମାନିବୁ । ତେବେ ତୋତେ ଭୋକରେ ରହିବାକୁ ପଡିବ ନାହିଁ କି କାହା ଆଗରେ ହାତ ପତାଇବୁ ନାହିଁ । ମୋ ସାଙ୍ଗରେ ଯିବୁ ?''

ଭିକାରୀ ତା' ପଛେ ପଛେ ଗଲା । ବିକାର ତା'କୁ ନିଜ ଘରକୁ ନେଇଗଲା ଓ ନୂଆ ପୋଷାକ ପିନ୍ଧାଇଲା । ତା'ପରେ ତା'କୁ ସଙ୍ଗରେ ନେଇ ଜଣକ ଘରକୁ ଗଲା ଓ ସେଇ ଘରର ମାଲିକଙ୍କୁ କହିଲା, ''ସ୍ୱୟଂ ମହାରାଜା ଛଦ୍ମବେଶରେ ତୁମ ମାନଙ୍କର ଦୁଃଖ ଦରଦ ବୁଝିବାକୁ ଆସିଛନ୍ତି ।''

ଘର ମାଲିକ ସତରେ ବହୁତ ଅସୁବିଧାରେ ଥିଲେ । ସୁଯୋଗ ପାଇଲେ ସେ ତା'ଙ୍କ ଦୁଃଖ କାହାଣୀ ଅନ୍ୟମାନଙ୍କ ଆଗରେ ଗପୁଥିଲେ । ବିକାର କହିଲା: ''ଗ୍ରାମ ବାହାରେ ଥିବା ପରିତ୍ୟକ୍ତ ଧର୍ମଶାଳା ପାଖକୁ ଆସ । ତୁମେ ଯେତେ ଧନ ଚାହିଁବ, ମହାରାଜା ଦେବେ ।''

ତା'ପରେ ବିକାର ଭିକାରୀକୁ ଅନ୍ୟ ଜଣକ ଘରକୁ ନେଇଗଲା । ସେ ଘରର ମାଲିକଙ୍କୁ ସୈନିକ ମାନେ ବିନା କାରଣରେ ବନ୍ଦୀ କରିଥିଲେ ଓ ମୁକ୍ତ କରିବା ପାଇଁ ଶହେଟଙ୍କା ଲାଞ୍ଚ ମାଗୁଥିଲେ । ବିକାର କହିଲା, ''ଆପଣମାନେ କାଲି ସକାଳେ ଗ୍ରାମ ବାହାରର ପରିତ୍ୟକ୍ତ ଧର୍ମଶାଳା ନିକଟକୁ ଆସନ୍ତୁ । ମହାରାଜା ଆପଣଙ୍କ ସମସ୍ୟା ସମାଧାନ

କରିଦେବେ ।

ସେହି ଗ୍ରାମରେ ଜଣେ କବି ଥିଲେ, ଯିଏ ନିଜର କବିତା ରାଜ ଦରବାରରେ ଗାନ କରିବା ପାଇଁ ଅତ୍ୟନ୍ତ ଉତ୍ସୁକ ଥିଲେ ।

ଏପରି କେତେ ଲୋକଙ୍କୁ ବିକାର ଭେଟିଲା । ସମସ୍ତଙ୍କୁ ସକାଳେ ଧର୍ମଶାଳା ନିକଟକୁ ଆସି ରାଜାଙ୍କୁ ସାକ୍ଷାତ କରିବାକୁ କହିଲା ।

ଏହିପରି ସନ୍ଧ୍ୟା ହୋଇଗଲା । ବିକାର ଭିକାରୀକୁ ଧରି ନିଜ ଘରକୁ ଚାଲିଗଲା । ସେଠାରେ ସେ ଦେଇଥିବା ନୂଆ ପୋଷାକ ତା' ଦେହରୁ ବାହାରକରି ଆଣି, ପୁଣି ତା'କୁ ଭିକ୍ଷା ମାଗିବାକୁ ଯିବା ପାଇଁ ଆଦେଶ ଦେଇ କହିଲା ''କାଲି ସେଇ ଧର୍ମଶାଳା ନିକଟରେ ସକାଳୁ ସକାଳୁ ଆସି ପହଞ୍ଚିଯିବୁ । ତା'ପରେ ଦେଖିବୁ, କିପରି ମଜା ହେବ । ହସି ହସି ତୋ ପେଟ ଫାଟିଯିବ ।''

ତା'ପରଦିନ ସକାଳେ ଧର୍ମଶାଳା ନିକଟରେ ପହଞ୍ଚି ବିକାର ହତଚକିତ ହୋଇ ପଡିଲା । ସ୍ୱୟଂ ମହାରାଜା ସେଠାରେ ଉପସ୍ଥିତ ଥିଲେ । ତା' ପୂର୍ବଦିନ ବିକାର ଯେତେ ଲୋକଙ୍କୁ ମିଥ୍ୟା ପ୍ରଲୋଭନ ଦେଖାଇଥିଲା, ସେମାନଙ୍କର ସମସ୍ୟା ରାଜା ସମାଧାନ କରି ସାରିଥିଲେ ।

ଏତେବେଳକେ ବିକାର ବୁଝିପାରିଲା ଯେ, କାଲି ଯେଉଁ ଭିକାରୀ ତା' ସହିତ ଥିଲା, ସେ ହେଉଛନ୍ତି ନିଜେ ମହାରାଜା । ସେ ତୁରନ୍ତ ରାଜାଙ୍କ ପାଦତଳେ ପଡିଯାଇ କ୍ଷମା ମାଗିଲା ଓ କହିଲା, ''ପ୍ରଭୁ, ମୋ ପାଇଁ ଗ୍ରାମର କେତେ ଲୋକଙ୍କର ଉପକାର ହେଲା । ମୋତେ ମଧ୍ୟ ଆପଣ କୃପା କରନ୍ତୁ ।''

''ଠିକ୍ ଅଛି । ଆଜିଠାରୁ ତୁମକୁ ବନ୍ଦୀ କରି ଗ୍ରାମ ମଝିରେ ଥିବା ମାଟି କାନ୍ଥର ଘର ଭିତରେ ରଖାଯିବ । ଗ୍ରାମରେ କୌଣସି ସମସ୍ୟା ଜାତ ହେଲେ ତୁମକୁ ଖବର ଦିଆଯିବ ଓ ତୁମ ମାଧ୍ୟମରେ ସମସ୍ୟାର ସମାଧାନ ହେବ ।''

''ମହାରାଜ, ଆପଣ ମୋତେ କି ପ୍ରକାରର ଦଣ୍ଡ ଦେଉଛନ୍ତି ?'' ବିକାର ଅତ୍ୟନ୍ତ ଅନୁନୟ ହୋଇ ପ୍ରାର୍ଥନା କଲା ।

''ମୁଁ ବା କ'ଣ କରିପାରିବି ? ତୁମକୁ ଲୋକ ମାନଙ୍କୁ କନ୍ଦାଇଲେ ଯେପରି ମଜା ଲାଗୁଥିଲା, ସେହିପରି ମୋତେ ତୁମ ପରି ଲୋକଙ୍କୁ ଏପରି ଦଣ୍ଡ ଦେଲେ ମଜା ଲାଗେ ।'' ମହାରାଜ ହସି ହସି କହିଲେ ।





# ମାୟା ସରୋବର

(୩)

*(ସେନାଧ୍ୟକ୍ଷଙ୍କ ପୁତ୍ର ମଙ୍ଗଳବର୍ମାଙ୍କୁ ଜୟଶୀଳ ବାଘ ମୁଖରୁ ରକ୍ଷା କଲେ । ରାଜା କନକାକ୍ଷ ଏହାର ଉଚ୍ଚପ୍ରଶଂସା କଲେ ଓ ମନ୍ତ୍ରୀଙ୍କ ପରାମର୍ଶକ୍ରମେ ତା'ଙ୍କୁ ରାଜଦରବାରରେ ନିଯୁକ୍ତି ଦେଲେ । ମନ୍ତ୍ରୀ ଯେତେବେଳେ ରାଜ୍ୟର ଘଟଣାବଳୀ ସମ୍ପର୍କରେ ବିବରଣୀ ପ୍ରଦାନ କରୁଥିଲେ, ସେତେବେଳେ ଜଣେ ସୈନିକ ଭଙ୍ଗା ତରବାରୀ ଓ ଗୋଟିଏ ମୋତିହାର ଧରି ସେଠାରେ ପହଞ୍ଚିଲା ।)*

ସୈନିକ ହାତରେ ଥିବା ମୋତିହାରକୁ ଦେଖି କନକାକ୍ଷ ଓ ମନ୍ତ୍ରୀ ଧର୍ମମିତ୍ର ଆଶ୍ଚର୍ଯ୍ୟ ହୋଇଗଲେ । ମନ୍ତ୍ରୀ ମୋତିହାରକୁ ନିରେଖି ଚାହିଁ କହିଲେ ''ମହାରାଜ, ଏହି ହାର ରାଜକୁମାରୀଙ୍କର ନୁହେଁ ତ ? ଆଉ ଏହି ଭଙ୍ଗା ତରବାରୀ ରାଜକୁମାରଙ୍କର ପରି ମନେ ହେଉଛି !''

ରାଜା ମଧ୍ୟ ତା'ଙ୍କୁ ଧ୍ୟାନର ସହିତ ଦେଖିଲେ ଓ କହିଲେ: ''ଯଦି ମୋତେ କୁହାଯାଇ ନ ଥାନ୍ତା ଯେ ସେ ଦୁହେଁ ସେଇ ବୃକ୍ଷ ପାଖରେ ଥିଲେ, ତେବେ ମୋର ମଧ୍ୟ ଏହି ସମ୍ବନ୍ଧରେ କିଛି ସନ୍ଦେହ ନ ଥାନ୍ତା ।''

''ଆମେ ଏବେ ରାଜକୁମାରୀଙ୍କ ମୁଖ୍ୟ ସଖୀ ମଲ୍ଲିକାକୁ ଡକାଇବା । ହୁଏତ ସେ ତରବାରୀ ସମ୍ପର୍କରେ ଜାଣି ନ ପାରେ, କିନ୍ତୁ ଅତି କମ୍‌ରେ ଏହି ମୋତିହାର ବିଷୟରେ କିଛି ନିଶ୍ଚୟ ଜାଣିଥିବ ।'' ମନ୍ତ୍ରୀ ଧର୍ମମିତ୍ର କହିଲେ ।

ରାଜାଙ୍କ ଆଦେଶ ପାଇବା କ୍ଷଣି ଜଣେ ସେବକ ମଲ୍ଲିକାକୁ ଆଣିବା ପାଇଁ ଗଲା । ସେ ରାଜକୁମାରୀଙ୍କ ଅନ୍ତର୍ଦ୍ଧାନ ଘଟଣାରେ ଅତ୍ୟନ୍ତ ବିମର୍ଷ ଥିଲା । ରାଜା ତା'ଙ୍କୁ କହିଲେ ନାହିଁ ଯେ,



ରାଜାଙ୍କର ଏପରି ଦୟନୀୟ ସ୍ଥିତି ଦେଖି ମନ୍ତ୍ରୀ ମଲ୍ଲିକାକୁ ପଚାରିଲେ, ‘‘ପୁତ୍ରୀ, ଏପରି ମୂଲ୍ୟବାନ ହାର ଅନେକ ସମ୍ଭ୍ରାନ୍ତ ମହିଳା ପରିଧାନ କରୁଛନ୍ତି ତେବେ ତୁମେ କିପରି ଦୃଢ଼ତାର ସହିତ କହିପାରୁଛ ଯେ ଏହା ରାଜକୁମାରୀଙ୍କର ।’’

ମଲ୍ଲିକା ସେହି ହାରର ଦୁଇଟି ମୋତି ଦେଖାଇ କହିଲା, ‘‘ଏହି ମୋତି ଦୁଇଟିରେ ଦାଗ ଦେଖିପାରୁଛନ୍ତି । ରାଜକୁମାରୀ ମୋ ଉପରେ ବିରକ୍ତ ହୋଇ ହାର ମୋ ଉପରକୁ ଫିଙ୍ଗିଦେଲେ । ଲକ୍ଷ୍ୟଭ୍ରଷ୍ଟ ହୋଇ ହାରଟି ଅନ୍ୟ ସ୍ଥାନରେ ପଡିଲା । ସେତେବେଳେ ଏହି ମୋତି ଦୁଇଟି ନଷ୍ଟ ହୋଇ ଯାଇଥିଲା ।’’ ମଲ୍ଲିକାର କଥା ଶୁଣି ସମସ୍ତଙ୍କର ବିଶ୍ୱାସ ହେଲା ଯେ, ସେହି ହାର ରାଜକୁମାରୀ କାଞ୍ଚନମାଳାଙ୍କର ଅଟେ । ଆଉ ଭଗ୍ନ ତରବାରୀ ଯୁବରାଜଙ୍କର ହୋଇଥିବ । ଏଥିରେ କାହାର ସନ୍ଦେହ ରହିଲା ନାହିଁ ।

ରାଜା ମନ୍ତ୍ରୀଙ୍କୁ କହିଲେ: ‘‘ଯେଉଁ ଭୀଲ ଲୋକ ଏହାକୁ ପାଇଥିଲା ସେ ଏବେ କେଉଁଠାରେ ?’’ ହାତ ଧରି ଆସିଥିବା ଅନୁଚର ତୁରନ୍ତ ଉତ୍ତର ଦେଲା: ‘‘ସେହି ଲୋକର ମାନସିକ ସ୍ଥିତି ଠିକ୍ ନାହିଁ । ସେ ଆମ ପ୍ରଶ୍ନର ଉତ୍ତର ଦେବା ପରି ଅବସ୍ଥାରେ ନାହିଁ । ସେ ଖାଲି ଚିତ୍କାର କରି କହୁଛି ‘‘ଦୁଇ ଗୋଡିଆ କୁମ୍ଭୀର ।’’

ଏହା ଶୁଣି ସିଦ୍ଧ ସାଧକ ଚମକି ପଡିଲେ ଓ କହିଲେ: ‘‘ମହାରାଜ ! ଏହା ଏକ ଜଣାଶୁଣା କଥା ଯେ ମହାକାଳ ପରିବାରର ଭୂତମାନେ କେବେ କେବେ ବିଚିତ୍ର ଧରଣର ବେଶରେ ଦେଖା ଦିଅନ୍ତି । ସେହି ଭୀଲ ଉପରେ ଭୂତ ସବାର ହୋଇଛି । ଆମକୁ ତା’କୁ ଆମ ଅଧୀନକୁ ଆଣିବାକୁ ପଡିବ ଓ ତା’ଠାରୁ ସତ୍ୟ ବାହାର କରିବାକୁ ପଡିବ । ମୋର ପୂର୍ଣ୍ଣ ବିଶ୍ୱାସ ଯେ, ସେ ଆମକୁ ସଠିକ

ସେହି ମୋତିହାର କେଉଁଠି ଥିଲା । ତା’କୁ ହାର ଦେଖାଇ ସେ ପଚାରିଲେ, ‘‘ଅନ୍ତଃପୁରର କେହି ମହିଳା ଏହି ହାରଟି ଉଦ୍ଧାର କରିଛି । ଏହାକୁ ନିଅ ଓ ଯାହାର ହାର ତା’କୁ ଫେରାଇ ଦିଅ ।’’

ମଲ୍ଲିକା ସେହି ହାରର ମୋତିକୁ ଭଲଭାବେ ଦେଖିଲା ଓ ହଠାତ୍ ଗୋଟିଏ ମୋତିକୁ ଧରି ଚିତ୍କାର କରି କହିଲା, ‘‘ମହାରାଜ, ଏହି ହାର ରାଜକୁମାରୀଙ୍କର । ଯେତେବେଳେ ଆମେ ଜଙ୍ଗଲକୁ ଭ୍ରମଣ ପାଇଁ ଯାଇଥିଲୁ, ସେ ଏହି ହାର ପିନ୍ଧିଥିଲେ ।’’

ମଲ୍ଲିକା ଯେତେବେଳେ ଦାବୀ କଲା ଯେ ହାର ରାଜକୁମାରୀଙ୍କର ଅଟେ, ମହାରାଜାଙ୍କ ମନ ଦୁଃଖରେ ଭରିଗଲା । ସେ ମଲ୍ଲିକାକୁ ଆଉ କିଛି ପଚାରିବାକୁ ଚାହୁଁଥିଲେ କିନ୍ତୁ ପଚାରି ପାରିଲେ ନାହିଁ । ତା’ଙ୍କର କଣ୍ଠ ରୋଧ ହୋଇଗଲା, ଚକ୍ଷୁରୁ ଅଶ୍ରୁ ନିଗିଡି ପଡିଲା ଓ ସେ ମୁଣ୍ଡ ତଳକୁ କରି ନୀରବ ରହିଲେ ।

ତଥ୍ୟ ଦେଇ ପାରିବ । ମୋତେ ଓ ଜୟଶୀଳଙ୍କୁ ଜଙ୍ଗଲକୁ ଯିବାପାଇଁ ଅନୁମତି ପ୍ରଦାନ କରନ୍ତୁ ।''

ରାଜା ତା'ଙ୍କୁ ଅନୁମତି ଦେଲେ । ଜୟଶୀଳ ଓ ସିଦ୍ଧ ସାଧକ ଦୁହେଁ ଜଣେ ସେବକକୁ ସାଙ୍ଗରେ ଧରି ଜଙ୍ଗଲ ଅଭିମୁଖେ ବାହାରିଗଲେ ଓ ସେଠାରେ ଜଟାଧାରୀ ବରଗଛ ମୂଳରେ ପହଞ୍ଚିଲେ । ସେଠାରେ କେତେଜଣ ଭୀଲ ଉପସ୍ଥିତ ଥିଲେ । ସେମାନେ ସେହି ଭୀଲକୁ ଦଉଡିରେ ବାନ୍ଧି ଦେଇଥିଲେ । ସେମାନଙ୍କ ମଧ୍ୟରେ ଜଣେ ଭୂତବୈଦ୍ୟ ଥିଲେ । ''ହାମ୍ ଫଟ୍, ହାମ୍ ଫଟ୍'' କହି ସେ ଚିତ୍କାର କରୁଥିଲେ ଓ ତା' ଉପରେ କିଛି ଭସ୍ମ ଫିଙ୍ଗୁଥିଲେ ।

ଜୟଶୀଳ, ସିଦ୍ଧସାଧକ ଓ ସେବକ ସେଠାରେ ପହଞ୍ଚି ଏହି ଦୃଶ୍ୟ ଦେଖିଲେ । ସିଦ୍ଧ ସାଧକ ତା'ଙ୍କର ମନ୍ତ୍ରଦଣ୍ଡ ଉଠାଇ ଭୂତବୈଦ୍ୟକୁ ବାରଣ କଲେ । ଭୂତ ବୈଦ୍ୟ ସିଦ୍ଧସାଧକଙ୍କୁ କଟମଟ ହୋଇ ଚାହିଁ ଆକ୍ରମଣ କରିବାକୁ ଉଦ୍ୟତ ହେବା ବେଳକୁ ସେବକ ତା'ଙ୍କୁ ବାଧା ଦେଇ କହିଲା, ''ସଂଯତ ହୁଅ, ସେ ହେଉଛି ରାଜା ଦରବାରର ତାନ୍ତ୍ରିକ ।''

ସିଦ୍ଧ ସାଧକ ଗୋଟିଏ ପାଦ ଆଗକୁ ବଢ଼ି କହିଲେ, ''ଆରେ ତୁ ଗୋଟାଏ ନୀଚ ଗ୍ରହ ଉପାସକ । ମୋର ଏହି ମନ୍ତ୍ର ଉଚ୍ଚାରଣ ଦ୍ୱାରା ତୋତେ ପବନରେ ଉଡାଇ ଦେବି ।''

ଭୂତବୈଦ୍ୟ ଭୟରେ ଥରହର ହେଲା । ଭୟଭୀତ ଭୀଲ ଯୁବକଙ୍କୁ ସିଦ୍ଧ ସାଧକ କହିଲେ, ''ଆରେ ଭୀମ, ଯେଉଁ ଦୁଇଗୋଡିଆ କୁମ୍ଭୀର ତୋତେ ଭୟଭୀତ କରାଇଛି, ତା'ରି ଛାତିରେ ତରବାରୀ ଆଘାତ କରି ଏହି ବୀର ତା'କୁ ମାରି ପକାଇଛନ୍ତି । ଏବେ ତା'ର ଡରିବାର କିଛି ନାହିଁ । ଉଠି ଠିଆ ହୁଅ । ଏହାକୁ ଦେଖ, ଏଇ ତରବାରୀରେ ଜୟଶୀଳ ତା'କୁ ହତ୍ୟା କରିଛନ୍ତି ।



ଏହା କହି ସାଧକ ଜୟଶୀଳଙ୍କର ତରବାରୀ ବାହାର କରି ଦେଖାଇଲେ ।

ଭୀଲ ଯୁବକ ତୁରନ୍ତ ଠିଆ ହୋଇ ପଡିଲା ଓ କହିଲା, ''ମହାଶୟ, ଆପଣ କ'ଣ ସତରେ ସେଇ ଦୁଇଗୋଡିଆ କୁମ୍ଭୀରକୁ ମାରି ପକାଇଲେ ? କାହିଁ, କେଉଁଠି ତା'ର ମୃତଦେହ ?''

ସିଦ୍ଧ ସାଧକ ବିଚଳିତ ନ ହୋଇ କହିଲେ, ''ମନୁଷ୍ୟ ମରିଗଲେ ଶବ ହୋଇଯିବ । କିନ୍ତୁ ପିଶାଚର ମୃତ୍ୟୁରେ ଶବ କେଉଁଠୁ ଆସିବ ? ଏବେ କହ, ସେହି ମୋତିହାର ଓ ଭଗ୍ନ ତରବାରୀ ତୁ କେଉଁଠୁ ପାଇଲୁ ?''

ଭୀଲ ନିଜର ଗଳା ସଫା କରି କହିଲା: ''ମହାଶୟ, ମୁଁ ଶିକାର କରିବା ପାଇଁ ବସ୍ତିରୁ ଆସିବା ବେଳେ ଏହି ବରଗଛର ଡାଳରେ ବସି ଗୋଟିଏ ଜଙ୍ଗଲୀ କୁକୁଡା ବୋବାଉ ଥିଲା । ମୁଁ ତା' ଉପରକୁ ତୀର ଚଳାଇଲି । ତୀର ତା'ର ଡେଣାରେ ଲାଗିଲା । କୁକୁଡା ଉଡି ପାରିଲା ନାହିଁ ।



ଗୋଟିଏ ବୁଦା ମୂଳରେ ପଡିଲା ।'' ଏପରି କହି ସେ ସିଦ୍ଧ ସାଧକ ଓ ଜୟଶୀଳଙ୍କୁ ଗୋଟିଏ ଗହଳିଆ ବୁଦା ପାଖକୁ ନେଇଗଲା । ''ମହାଶୟ, ଏହି ବୁଦା ନିକଟରୁ ମୁଁ ମୋତିହାର ଓ ତରବାରୀ ଖଣ୍ଡ ପାଇଥିଲି ।''

ଭୀଲ ଯୁବକର କଥା ନ ସରୁଣୁ ସିଦ୍ଧସାଧକ ନଇଁ ପଡି ବୁଦା ଭିତରକୁ ଲକ୍ଷ୍ୟ କଲେ ଓ ଚିତ୍କାର କରି କହିଲେ, ''ଜୟଶୀଳ, ମହାରଣ୍ୟ ମଧ୍ୟରେ ଥିବା ଏହି କଣ୍ଟାଳିଆ ବୁଦା ଭିତରେ ଗୋଟିଏ ପ୍ରାଚୀନ ତାଳପତ୍ର ପୋଥି ଅଛି । ଜୟ ମହାକାଳୀ !'' ଏପରି କହି ସେ ବୁଦା ଭିତରୁ ତାଳପତ୍ର ପୋଥି ବାହାର କଲେ ।

ସେହି ତାଳପତ୍ର ପୋଥିକୁ ଦେଖିବା କ୍ଷଣି ସିଦ୍ଧସାଧକ ଉତ୍ସାହିତ ହୋଇ ପଡ଼ିଲେ ଓ ତା'ଙ୍କ ଚେହେରାରେ ଅଦ୍‌ଭୁତ ଚମକ ଖେଳିଗଲା । ସେ ଗୋଟିଏ ପରେ ଗୋଟିଏ ପୃଷ୍ଠା ଓଲଟାଇ ପୁରା ପୋଥିକୁ ନୀରିକ୍ଷଣ କଲେ । ସେ ଏହି କାମରେ ଏପରି ମଜ୍ଜିଗଲେ ଯେ ସେପାଖରେ ଥିବା ଜୟଶୀଳଙ୍କ କଥା ମଧ୍ୟ ପାଶୋରି ପକାଇଲେ । ତା'ଙ୍କର ଏପରି ବିଚିତ୍ର ଅବସ୍ଥା ଜୟଶୀଳଙ୍କୁ ବିସ୍ମିତ କଲା । ''ଏହା କେଉଁ ପ୍ରକାରର ଭାଷା, କେଉଁ ଅଞ୍ଚଳର ଲୋକମାନେ ଏପରି ଭାଷାରେ କଥା ହୁଅନ୍ତି ? ଏହା ତାଳପତ୍ରରେ ପ୍ରସ୍ତୁତ, ନୁହେଁ ତା'ଠାରୁ ବହଳିଆ ଲାଗୁଛି ।'' କିଛି ସମୟ ପରେ ସିଦ୍ଧସାଧକ ମନ୍ତବ୍ୟ ଦେଲେ ।

ଜୟଶୀଳ୍ ସାଧକଙ୍କ ହାତରୁ ପୋଥିନେଇ ଧ୍ୟାନର ସହିତ ଦେଖିବା ପରେ କହିଲେ, ''ଭୀଲ କହୁଥିବା ଦୁଇଗୋଡିଆ କୁମ୍ଭୀର ଏଠାରେ ଏହି ପୋଥି ଛାଡ଼ି ଯାଇଥିବ ।''

''ହଁ, ସେପରି ହୋଇଥିବ ।'' ଏପରି କହି ସିଦ୍ଧସାଧକ ଭୀଲ ଯୁବକଙ୍କୁ ପଚାରିଲେ, ''ଦୁଇଗୋଡିଆ ମଗର ଏଠାକୁ ଆସିଥିଲା କାହିଁକି ?''

''ଆଜ୍ଞା ! ବୁଦା ମଧ୍ୟରେ ଜଙ୍ଗଲୀ କୁକୁଡା ରହିଥିଲା । ତା'କୁ ବାହାର କରିବା ପାଇଁ ମୁଁ ବୁଦା ଭିତରକୁ ଗଲି । ଏତିକି ବେଳେ ମୋ ପଛରୁ ଶବ୍ଦ ଶୁଭିଲା । ମୁଁ ଚାହିଁ ଦେଖେ ତ ଗୋଟିଏ ଭୟଙ୍କର ଆକୃତିର ଜୀବ ଠିଆ ହୋଇଛି । ଭୟରେ ଚିତ୍କାର କରି ମୁଁ ବେହୋଶ ହୋଇ ପଡିଗଲି ।'' ଭୀଲ ଯୁବକ କହିଲା ।

ଜୟଶୀଳ ତା' ପିଠି ଉପରେ ହାତ ଥାପୁଡେଇ କହିଲେ, ''ତୁମେ ଯେଉଁ ଜଙ୍ଗଲୀ କୁକୁଡାକୁ ତୀର ଚଳାଇଥିଲ, ସେଇଟା ଗଲା କୁଆଡେ ?'' ଭୀଲ କିଛି କହିବାକୁ ଯାଉଥିବା ବେଳେ ଭୂତବୈଦ୍ୟ ଦାନ୍ତ କାମୁଡି କହିଲା, ''ପର୍ବତଦେବୀ ତା'କୁ ଉଠାଇ ନେଲେ । ସକାଳୁ ସକାଳୁ କୁକୁଡା ମାରି ସେ ବଡ ଅପରାଧ କରିଥିଲା ।''

ଜୟଶୀଳ ଏପରି ଉତ୍ତରରେ ସନ୍ତୁଷ୍ଟ ନ ହୋଇ

କହିଲେ: ''ମନେ ହେଉଛି ଏଠାରେ ସବୁ ଅପଦାର୍ଥ ଏକାଠି ହୋଇଛନ୍ତି । ଆମକୁ ଅତି କମ୍‌ରେ ଏହି ପର୍ବତ ଓ ଅରଣ୍ୟ ଅଞ୍ଚଳରେ ଗୋଟିଏ ସପ୍ତାହ ବୁଲାବୁଲି କରିବାକୁ ପଡିବ । ଆମକୁ ଦୁଇ ଗୋଡିଆ କୁମ୍ଭୀରକୁ ଖୋଜି ବାହାର କରିବାକୁ ପଡିବ ।''

''ତୁମେ ଠିକ୍ କହୁଛ ଜୟଶୀଳ ! ଯିଏ ଏଠାରେ ତାଳପତ୍ର ପୋଥି ଛାଡି ଯାଇଛି, ସେ ହିଁ ଯୁବରାଜ ଓ ଯୁବରାଣୀଙ୍କୁ ଅପହରଣ କରି ନେଇଥିବ । ସେ ନିଶ୍ଚୟ ରାକ୍ଷସ, ଗନ୍ଧର୍ବ, କିନ୍ନର କିମ୍ବା ଯକ୍ଷ ହୋଇଥିବ ।'' ସିଦ୍ଧସାଧକ ମନର ସନ୍ଦେହ ବ୍ୟକ୍ତ କଲେ । ତା'ପରେ ସେମାନେ ଦୁହେଁ ପାହାଡ ଉପରକୁ ଯିବାକୁ ବାହାରିଲେ । ସେମାନଙ୍କ ସହିତ ଆସିଥିବା ରାଜସେବକ କହିଲା, ''ମହାଶୟ, ଫେରି ଯିବାପାଇଁ ମୋତେ ଅନୁମତି ଦିଅନ୍ତୁ । ରାଜାଙ୍କୁ କ'ଣ କହିବି, ଜଣାନ୍ତୁ ।

ସିଦ୍ଧସାଧକ କହିଲେ, ''ମହାରାଜାଙ୍କୁ ଶୁଭ ସମାଚାର ଶୁଣାଇବ । ତା'ଙ୍କୁ କହିବ ଯେ, ଯେଉଁ ବରଗଛ ତଳେ ତା'ଙ୍କର ସନ୍ତାନ ନିଖୋଜ ହୋଇ ଯାଇଥିଲେ, ସେଠାରୁ ଏକ ମୂଲ୍ୟବାନ ପୋଥି ମିଳିଛି । ସେହି ପୋଥିର ସହାୟତାରେ ଯୁବରାଜା ଓ ଯୁବରାଣୀଙ୍କୁ ଖୋଜି ପାଇବା ସହଜ ହେବ । ଦୁଷ୍ଟଙ୍କୁ ସଂହାର କରି ଆମେ ସକୁଶଳରେ ରାଜଭବନକୁ ଫେରି ଆସିବୁ ।''

ସିଦ୍ଧସାଧକଙ୍କ କଥା ଶୁଣି ଜୟଶୀଳ ମନକୁ ମନ ହସି ଉଠିଲେ । ତା'ପରେ ସେ ଘୋର ଜଙ୍ଗଲ ମଧ୍ୟ ଦେଇ ପାହାଡ ଆଡକୁ ଅଗ୍ରସର ହେଲେ । ଏହି ସମୟରେ ପର୍ବତର ପାଦ ଦେଶରେ ଥିବା ଏକ ଗ୍ରାମର ଲୋକମାନେ ନିଜ ନିଜ ଘରୁ ବାହାରି ଆସି ଚିତ୍କାର କରୁଥିବାର ସେ ଦେଖିଲେ । ସେମାନଙ୍କ ମଧ୍ୟରେ ଭୟ ଓ ଆତଙ୍କ ଖେଳି ଯାଇଥିଲା ।



ସେମାନଙ୍କ ଆତଙ୍କର କାରଣ ଥିଲା, ସେଦିନ କ୍ଷେତରେ ଘଟିଥିବା ଏକ ଘଟଣା । ସେଇ କ୍ଷେତର ଗୋଟିଏ ସ୍ଥାନରେ ଏକ ମଞ୍ଚା ଥିଲା । ଚଉଦ ବର୍ଷର ଗୋଟିଏ ବାଳକ ସେହି କ୍ଷେତର ଦେଖାରଖା କରିବା ପାଇଁ ମଞ୍ଚାରେ ବସିଥିଲା । କ୍ଷେତ ଭିତରକୁ ଗୋଟିଏ ହାତୀ ପଶି ଆସୁଥିବାର ଲକ୍ଷ୍ୟ କରି ସେ ତା'କୁ ସେଠାରୁ ତଡି ଦେବା ପାଇଁ ବାହାରିଲା । ଗୁଲେଇରେ ଗୋଟିଏ ବଡ ପଥର ରଖି ସେ ହାତୀ ଉପରକୁ ଲକ୍ଷ୍ୟ କରି ଫିଙ୍ଗିଲା ।

ପଥର ଯାଇ ହାତୀ ଦେହରେ ଆଘାତ ଦେଲା । ଆଘାତ ପାଇଲେ ହାତୀମାନେ ସାଧାରଣତଃ ଉତ୍‌କ୍ଷିପ୍ତ ହୋଇ ଉଠନ୍ତି । କିନ୍ତୁ ଏପରି ହେଲା ନାହିଁ । ସେ ଦେଖିଲା ଯେ ଏକ ବିଚିତ୍ର ଆକାରର ହାତୀ ମନୁଷ୍ୟ ସ୍ୱରରେ କହିଲା, ''ଆରେ ମୂର୍ଖ, ମୋତେ ପଥରରେ ମାରୁଚୁ ? ମୋତେ କ'ଣ ବୋଲି ଭାବିଛୁ କି ?'' ତା' ପରେ ସେ ଭୟଙ୍କର ହୁଙ୍କାର ଛାଡିଲା ।



ଯାଇଥିବା ଏହି ଭଙ୍ଗା ତରବାରୀ ଖଣ୍ଡ ବାହାର କରିବାକୁ ପଡିବ, ମୋତେ ବଞ୍ଚାଇବାକୁ ପଡିବ। ମୋତେ ସାହାଯ୍ୟ କଲେ ପୁରସ୍କାର ଦେବି।''

ମାଟି ତଳେ ପାଦ ଲାଗିବା କ୍ଷଣି, ବାଳକ ମନରେ ସାହସ ଆସିଲା। ସେ ଚିତ୍କାର କରି ତୋଫାନ ଗତିରେ ଗ୍ରାମ ଦିଗରେ ଧାଇଁଲା। କେଉଁ ଯମଦୂତ ହାତରୁ ମୁକୁଳିଗଲା ପରି ସେ ଅନୁଭବ କରୁଥିଲା।

ନିମ୍ବ ଗଛ ମୂଳରେ ଥିବା ମଣ୍ଡପରେ ଗ୍ରାମବାସୀମାନେ ବସି ଗପସପ କରୁଥିଲେ। ସେମାନେ ଜୀବନ ବିକଳରେ ଧାଉଁଥିବା ସେଇ ବାଳକକୁ ଦେଖି ମନେକଲେ ବୋଧହୁଏ ଶସ୍ୟ କ୍ଷେତ୍ରରେ ହରିଣ କିମ୍ବା ଜଙ୍ଗଲୀ ବାରହା ପଶି ଯାଇଛନ୍ତି। ସେମାନେ ତା'କୁ ଅଟକାଇ ପ୍ରଶ୍ନ କଲେ, ''କ'ଣ ହେଲା ? କାହିଁକି ଏପରି ଧାଇଁଛୁ ?''

ଧଇଁ ସଇଁ ହୋଇ ବାଳକ ସବୁ କଥା କହିଲା। କେହି ତା'କଥାକୁ ହଠାତ୍ ବିଶ୍ୱାସ କଲେ ନାହିଁ। କେତେ ଜଣ ଭାବିଲେ ଯେ, ତା'ର ମତିଭ୍ରମ ଘଟିଛି। ଗ୍ରାମର ମୁଖିଆଙ୍କ ଠାରୁ ସବୁ ବିଷୟ ଜାଣିବା ପରେ ଗ୍ରାମର ଜ୍ୟୋତିଷ କହିଲେ ''ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ। ଭୂତ ସବାର ହେଲେ ଜଳହାତୀ, ମଗର ମଣିଷ ନୁହେଁ, ମନୁଷ୍ୟ ମୁଖା ସିଂହ, ଦଶ ମୁଣ୍ଡିଆ ମଣିଷ ଏମିତି କେତେ କ'ଣ ଦୃଶ୍ୟ ହେବ।''

''ପ୍ରଥମେ ଚିନ୍ତା କର, ଆମକୁ କ'ଣ କରିବାକୁ ହେବ ? କେହି ଆମର ସର୍ବନାଶ କରିବାକୁ ଚାହୁଁନାହିଁ ତ ?'' -ମୁଖିଆ ବ୍ୟସ୍ତ ହୋଇ କହିଲେ। ସମସ୍ତେ ସେଇ ଚର୍ଚ୍ଚାରେ ଲାଗି ପଡିଲେ। ଜଣେ କହିଲା: ''ଦେଖ, ତା' ଶରୀରରେ ଭଙ୍ଗା ତରବାରୀ ଅଛି। ଖାଦ୍ୟ ସାମଗ୍ରୀ ସହିତ ଜଣେ ବୈଦ୍ୟକୁ ମଧ ଆଣିବାକୁ ସେ ଆଦେଶ ଦେଇଛି। ଆମେ

ସେଇ ହୁଙ୍କାର ଶୁଣି ବାଳକ ଭୟରେ କମ୍ପିବାରେ ଲାଗିଲା। ସେ ତଳକୁ ଓହ୍ଲାଇ ପଳାଇ ଯିବା ପାଇଁ ଭାବୁଥିଲା। କିନ୍ତୁ ସେ ସେତକ ବି କରିପାରିଲା ନାହିଁ। ଠିଆ ହୋଇ ରହିଗଲା।

ଚାହୁଁ ଚାହୁଁ ହାତୀ ମଞ୍ଚା ପାଖରେ ପହଞ୍ଚିଗଲା। ସେଇ ଅସାଧାରଣ ହାତୀର ଶରୀର ମାଛ ପରି ଦିଶୁଥିଲା। ତା'ଉପରେ କେହି ଜଣେ ବସିଥିଲା, ଯିଏ କି ମଗରର ଶିରସ୍ତ୍ରାଣ ପିନ୍ଧିଥିଲା। ତା'ର ଶରୀର ମଗର ଚର୍ମରେ ଆବୃତ ଥିଲା।

ସେହି ବିକୃତ ଆକାରଧାରୀ ଜୀବ ବାଳକ ପାଖକୁ ଆସି ନିର୍ଭୟ ପ୍ରଦାନ କରି କହିଲା: ''ଭୟ ନ କରି, ମୋ କଥା ଅନୁସାରେ କାମ କର। ଗ୍ରାମ ଭିତରକୁ ଯାଇ ମୋ ପାଇଁ ବଢିଆ ଭୋଜନ ନେଇ ଆସ। ତା' ସହିତ ଗ୍ରାମରେ ଯଦି ଭଲ ବୈଦ୍ୟ ଥିବେ, ତା'କୁ ମଧ ସାଙ୍ଗରେ ନେଇ ଆସିବୁ। ଶଲ୍ୟଚିକିତ୍ସାରେ ନିପୁଣ ହୋଇଥିଲେ ଭଲ। ଏପଟେ ଦେଖ। ମୋ ପେଟରେ ରହି

ବୈଦ୍ୟ ଚରକାଚାରୀଙ୍କୁ ସାଙ୍ଗରେ ନେଇଯିବା ।''

ଏବଂ ଆଦେଶ ଅନୁଯାୟୀ ଚରକାଚାରୀଙ୍କୁ ଡକାଗଲା ଏବଂ ଗ୍ରାମବାସୀଙ୍କୁ ରକ୍ଷା କରିବାକୁ ଯାଇ ତା'ଙ୍କୁ ସେଠାକୁ ଯିବାକୁ ପଡିବ ବୋଲି କୁହାଗଲା

ଏହା ଶୁଣି ଚରକାଚାରୀ ଭୟରେ ଥରହର ହୋଇ କହିଲା: ''ମୁଁ ପୁଣି ସେଇ ବିକୃତ ଆକାରଧାରୀ ରାକ୍ଷସର ଚିକିତ୍ସା କରିବି । ନା ବାବା ନା ! ଜଣେ ଶଲ୍ୟଚିକିତ୍ସକ ଯିବା ଦରକାର । ଆମ ଗ୍ରାମର ବାରିକ ନାରାୟଣଙ୍କୁ ପଠାଇଦେଲେ ଠିକ୍ ହେବ । ସେ ଯେତେବେଳେ ରାକ୍ଷସ ପେଟରୁ ଭଙ୍ଗା ତରବାରୀ ବାହାର କରିଦେବ, ସେତେବେଳେ ମୁଁ ସଞ୍ଜୀବନୀ ଔଷଧ ଲଗାଇ ତା'ର ଚିକିତ୍ସା କରିବି ଓ ରକ୍ତ ବୋହିବା ବନ୍ଦ କରି ପାରିବି ।''

ଦୁଇଜଣ ଲୋକ ସଙ୍ଗେ ସଙ୍ଗେ ଯାଇ ନାରାୟଣଙ୍କୁ ଧରି ଆଣିଲେ । ସେ ଛଟପଟ ହୋଇ କହୁଥାଏ, ''ମୁଁ ସେ କାମ କରି ପାରିବିନି ! ମୋତେ କିଛି ଜଣାନାହିଁ । ମୁଁ ପେଟରୁ ତରବାରୀ କାଢ଼ି ପାରିବି ନାହିଁ ।''

ଦୁଇଜଣ ହୃଷ୍ଟପୁଷ୍ଟ ଲୋକ ବାରିକକୁ ଜୋର୍‌ରେ ଭିଡି ଧରିଥିଲେ । ଗ୍ରାମର ମୁଖିଆ ଉଚ୍ଚସ୍ୱରରେ କହିଲେ, ''ସେ ଶଲ୍ୟଚିକିତ୍ସା କରି ପାରିବ କି ନାହିଁ, ପରେ ଦେଖାଯିବ, ଆଗେ ଆମେ ସମସ୍ତେ ଚାଲ ସେଠିକି ଯିବା । ସମସ୍ତେ ନିଜ ନିଜର କୁରାଢ଼ୀ, ଖଣ୍ଡା ଓ ବର୍ଚ୍ଛା ଆଣି କରି ଆସ, ସେ ପିଲା ଯାହା କହୁଛି ସତ କି ନୁହେଁ, ସେଠାକୁ ଗଲେ ଜଣା ପଡିବ ।''

ଲୋକମାନେ ତରବାରୀ, ବର୍ଚ୍ଛା, କୁରାଢ଼ୀ ଆଦି ହତିଆର ଧରି ବାହାରି ପଡିଲେ । ହତିଆର ଧରି ଲୋକମାନେ ସେ ଆଡକୁ ଆସୁଥିବାର ଦେଖି କିଛି ବିକୃତ ଚେହେରାବାଲା ହାତୀକୁ ଚାବୁକ ପ୍ରହାର କଲେ । ହାତୀ ଶୁଣ୍ଢ ଉଠାଇ ଗ୍ରାମବାସୀଙ୍କ ଆଡକୁ ମାଡି ଚାଲିଲା ।

ଚରକାଚାରୀ ର ଭୟ ତଥାପି ଯାଇ ନ ଥାଏ । ହାତୀ ଶୁଣ୍ଢ ଉଠାଇ ଗ୍ରାମବାସୀ ମାନଙ୍କ ଆଡ଼କୁ ମାଡ଼ି ଆସୁଥିବାର ଦେଖି ଭୟରେ ତା' ଅବସ୍ଥା ଖରାପ ହୋଇଗଲା । ଏହା ଦେଖି ଗ୍ରାମର ମୁଖିଆ ଅସୁବିଧାରେ ପଡ଼ିଲା । ସେ ଏହି କ୍ଷେତ୍ରରେ କ'ଣ କରିବ କିଛି ଚିନ୍ତା କରି ନ ପାରି ଚୁପ୍ ହୋଇ ରହିଗଲା ।

ବାରିକ ନାରାୟଣଙ୍କୁ ଧରିଥିବା ଲୋକ ଦୁଇଜଣଙ୍କର ବି ଉତ୍ସାହ ରହିଲା ନାହିଁ ।

(କ୍ରମଶଃ)



# ପାଣିର ଡର

ହରିପୁର ଗ୍ରାମର ଚାରିପଟେ ସବୁଜ କ୍ଷେତ ଘେରି ରହିଛି । ଗ୍ରାମର ଗୋଟିଏ ପୋଖରୀ ଅଛି । ସେଇ ପୋଖରୀରେ ସବୁ ଲୋକ ପହଁରା ଶିଖନ୍ତି । ସେମାନଙ୍କ ବିଚାରରେ ଯଦି କେବେ ବଢ଼ି ଆସେ ତେବେ ସନ୍ତରଣ ବିଦ୍ୟା କାମରେ ଆସିବ ।

ଗୋବିନ୍ଦ ସେଇ ଗ୍ରାମର ଜଣେ କୃଷକ । ଚାଳିଶ ପାଖାପାଖି ବୟସ ହେବ । କିନ୍ତୁ ତା'ର ଉଚ୍ଚତା ପ୍ରାୟ ଛଅଫୁଟ ହେବ । ସେ ଆଦୌ ପହଁରି ଜାଣେନି । ତା'କୁ ଯଦି କେହି ଏହି ବିଦ୍ୟା ଶିକ୍ଷା କରିବାକୁ ପରାମର୍ଶ ଦିଏ ତେବେ ସେ କହେ: ''ମୋର ପାଣିକୁ ବଡ ଡର । ଆଉ ମୋର ଉଚ୍ଚତା ଏତେ ବେଶୀ ଯେ, ଆମର ଏଠାରେ କୌଣସି ନାଳ ବା ପୋଖରୀ ନାହିଁ, ଯେଉଁଥିରେ ମୁଁ ବୁଡିଯିବି ।''

ଥରେ ସନ୍ଧ୍ୟାବେଳେ ସେ କ୍ଷେତରୁ ଘରକୁ ଫେରୁଥିଲା । ବର୍ଷା ଋତୁ । ପୋଖରୀ ହୁଡାରେ ଯାଉଥିବା ବେଳେ ଖୁବ୍ ଜୋର୍‌ରେ ବର୍ଷା ହେଲା । ତା'କୁ କିଛି ଦିଶିଲା ନାହିଁ । ଅଚାନକ ତା'ର ପାଦ ଖସିଯାଇ ସେ ପୋଖରୀରେ ପଡିଗଲା । ''ଆରେ ବାପ୍, କ'ଣ କରିବି ! ମୁଁ ତ ପହଁରା ଶିଖିନି । ଏବେ ମୋତେ କିଏ ରକ୍ଷା କରିବ ?'' ଏପରି ଆଶଙ୍କା କରି ସେ ପାଣିରେ ତଳ, ଉପର ହେବାକୁ ଲାଗିଲା ।

ହଠାତ୍ ତା'ର ମନେ ପଡିଲା ଯେ ପୋଖରୀ ବହୁତ ଦିନରୁ ଶୁଖିଲା ପଡିଥିଲା । ତେଣୁ ସେଥିରେ ବେଶୀ ପାଣି ନ ଥବ । ସେ ଠିଆ ହୋଇଗଲେ ଚଳିବ । ସେ ନିଜର ଭ୍ରମ ପାଇଁ ଲଜ୍ଜିତ ହେଲା । ମନେ ମନେ ଭାବିଲା, ''ମୁଁ କେତେ ବୋକା, ଯେଉଁଠାରେ ଅଳ୍ପ ପାଣି ଅଛି, ସେଠାରେ ବୁଡି ଯିବାର ଭୟ କରୁଛି । ଭୟରେ ମତିଭ୍ରଷ୍ଟ ହୋଇ ଗଲେ ବୁଦ୍ଧି କାମ କରୁନି ! ଏବେ ତ ପହଁରା ଶିଖିବାକୁ ପଡିବ !''

- କାଶୀରାମ



বেতাল কথা

# ମାତୃ ପ୍ରେମ

ନିଶା ଗରଜୁଥାଏ । ତୁହାକୁ ତୁହା ଶୀତଳ ପବନ ସାଙ୍ଗକୁ ମୃଦୁ ମୃଦୁ ବର୍ଷା । ବଣବୁଦା ଭିତରୁ ଭାସି ଆସୁଥାଏ ସାଇଁ ସାଇଁ ଶବ୍ଦ । ଶ୍ୱାନ, ଶ୍ୱାପଦଙ୍କ ରଡି ସାଙ୍ଗକୁ ଶୁଭୁଥାଏ ଅଶରୀରୀ ମାନଙ୍କର ଅଟ୍ଟହାସ୍ୟ । ଘନ ଘନ ବିଜୁଳି ଆଲୋକରେ ଦିଶି ଯାଉଥାଏ ଭୟାନକ ମୁହଁଟିମାନ ।

କିନ୍ତୁ ରାଜା ବିକ୍ରମାର୍କ ତିଳେମାତ୍ର ବିଚଳିତ ନ ହୋଇ ସେହି ପ୍ରାଚୀନ ବୃକ୍ଷଟି ପାଖକୁ ଲେଉଟିଗଲେ ଏବଂ ବୃକ୍ଷାରୋହଣ ପୂର୍ବକ ଶବଟିକୁ ଉତାରି ଆଣିଲେ । ସେ ତା'କୁ କାନ୍ଧରେ ପକାଇ ଶୁନ୍‌ଶାନ୍ ଶ୍ମଶାନ ଅତିକ୍ରମ କରିବାକୁ ଆରମ୍ଭ କରିବା



ଲାଗିଲା ।

ରତ୍ନଗିରି ନଗରରେ ରତ୍ନଗୁପ୍ତ ନାମକ ଜଣେ ଧନୀଲୋକ ବାସ କରୁଥିଲେ । ତା'ଙ୍କ ଧର୍ମପତ୍ନୀଙ୍କ ନାମ ରତ୍ନାବତୀ । ଦୁହେଁ ପରୋପକାରୀ ଓ ଦେବଭକ୍ତ । ବହୁ ବର୍ଷ ପରେ ସେମାନଙ୍କର ଗୋଟିଏ କନ୍ୟା ଜାତହେଲା । ସେମାନେ ତା'ର ନାମ ଦେଲେ ଅନ୍ନପୂର୍ଣ୍ଣା । କନ୍ୟାକୁ ସେମାନେ ଖୁବ୍ ଭଲ ପାଉଥିଲେ । କିନ୍ତୁ ଅକସ୍ମାତ ପାଞ୍ଚ ବର୍ଷ ବୟସରେ ସେ ଏକ ଅଜଣା ରୋଗରେ ପୀଡିତ ହେଲା ।

ଅନ୍ନପୂର୍ଣ୍ଣା ଯାହା ଖାଉଥିଲା ହଜମ ହେଉ ନ ଥିଲା । ତେଣୁ ସେ ଆହାର ଗ୍ରହଣ କରିବା ଏକ ରକମ ତ୍ୟାଗ କରିଦେଲା । ପ୍ରତିଦିନ ସନ୍ଧ୍ୟା ଓ ସକାଳ ବେଳା ତା'ର ମୁଣ୍ଡବ୍ୟଥା ହେଉଥିଲା । ପୀଡାରେ ସେ ଚିତ୍କାର କରି ଉଠୁଥିଲା । ଅନେକ ବୈଦ୍ୟ ତା'ର ଚିକିତ୍ସା କଲେ ମଧ୍ୟ ରୋଗ ଭଲ ହେଉ ନ ଥାଏ । ଶେଷରେ ପିତା ରତ୍ନଗୁପ୍ତ ତା'କୁ ଧରି ପାଖ ଅରଣ୍ୟରେ ରହୁଥିବା ସାଧୁ ଅଙ୍ଗଦଙ୍କ ପାଖକୁ ଗଲେ ।

ମାତ୍ରେ ଶବସ୍ଥିତ ବେତାଳ କହି ଉଠିଲା, ''ରାଜନ୍ ! ସଂସାରରେ ଏପରି କେତେ ଲୋକ ଅଛନ୍ତି, ଯେଉଁମାନଙ୍କ ମନରେ ଭୟଥାଏ ଯେ କାର୍ଯ୍ୟଟିଏ ପୂରଣ ହେବା ଆଗରୁ ବାଧାବିଘ୍ନ ଆସିପାରେ ଓ କାର୍ଯ୍ୟ ଅସଂପୂର୍ଣ୍ଣ ରହିଯାଇପାରେ । ତାହା ସେମାନଙ୍କର ନିଷ୍ଠା ଓ ମନୋବଳ ଅଭାବର ପରିଚୟ ଦିଏ । କିନ୍ତୁ ତୁମ କଥା ଅଲଗା । ହେଲେ ଶ୍ମଶାନରେ ତୁମର ଆଚରଣ ରାଜୋଚିତ ମନେ ହେଉନାହିଁ । କେବେ କେବେ ବିବେକୀ ମନୁଷ୍ୟ ମଧ୍ୟ ନିଜର ଭୁଲ୍ ଯୋଗୁ ଦୁଃଖ କଷ୍ଟର ଶିକାର ହୁଏ । ଉଦାହରଣ ସ୍ୱରୂପ ମୁଁ ତୁମକୁ ଅଙ୍ଗଜ ନାମକ ଜଣେ ସାଧୁଙ୍କ କାହାଣୀ ଶୁଣାଉଛି । ବୃଦ୍ଧାବସ୍ଥା ହେତୁ ସେ ତା'ଙ୍କର ବିବେକ ବୁଦ୍ଧି ହଜାଇ ସାରିଥିଲେ ଓ ତା'ଙ୍କୁ ବିଶ୍ୱାସ କରୁଥିବା ବିଶ୍ୱେଶ୍ୱରର ଅବସ୍ଥା ବିଷୟରେ ଏହି କାହାଣୀରୁ ଜାଣି ପାରିବ ।''

ତା'ପରେ ବେତାଳ କାହାଣୀ ଶୁଣାଇବାରେ

ଅଙ୍ଗଦ କିଛି ସମୟ ଧ୍ୟାନ କଲାପରେ ଚକ୍ଷୁ ଫିଟାଇ କହିଲେ, ''କନ୍ୟା ଜାତ ହେବାପରେ ତୁମେ ତା'ପ୍ରତି ଅତ୍ୟନ୍ତ ଅନୁରାଗ ଦେଖାଇ ଆସିଛ । ତୁମେ ଦେବ-ଭକ୍ତି କଥା ପାଶୋରି ଯାଇଛ । ତୁମ କନ୍ୟାର ଏହିରୋଗ ତୁମ ପ୍ରତି ଏକ ଚେତାବନୀ । କନ୍ୟାର ହୃଦୟରେ ଦେବ-ଭକ୍ତି ଜାଗ୍ରତ କରାଅ । ସେ ସେହି ସତ୍ୟ ଦ୍ୱାରା ଅନୁପ୍ରେରିତ ହୋଇ ସୁସ୍ଥ ହେବ ଓ ଜାଣି ପାରିବ ଯେ ଭଗବାନ ମାତା-ପିତାଙ୍କ ଠାରୁ ମହାନ ଅଟନ୍ତି ।

ରତ୍ନଗୁପ୍ତ, ଅଙ୍ଗଦଙ୍କ ପରାମର୍ଶ କ୍ରମେ କାର୍ଯ୍ୟ କଲେ । ସେହି ଦିନଠାରୁ ଅନ୍ନପୂର୍ଣ୍ଣା ଭକ୍ତିପୂତ ଚିତ୍ତରେ ଦେବ ସେବାରେ ଲାଗି ପଡିଲା । ମନ



ଲଗାଇ ପୂଜାପାଠ କଲା । ଖାଦ୍ୟକୁ ଭଗବାନଙ୍କ ପ୍ରସାଦ ଭାବେ ସେବନ କଲା । ଧୀରେ ଧୀରେ ସେ ଆରୋଗ୍ୟ ହୋଇ ଆସିଲା । କିନ୍ତୁ ବାଳକ ଧ୍ରୁବ, ଭକ୍ତ ପ୍ରହ୍ଲାଦଙ୍କ ପରି ସେ ସର୍ବଦା ଭକ୍ତି ଭାବରେ ତଲ୍ଲୀନ ରହିଲା ।

ଏହା ଦେଖି ରତ୍ନଗୁପ୍ତ ଚିନ୍ତିତ ହୋଇ ପଡିଲେ । ଦେବ-ଭକ୍ତିକୁ ଅନ୍ନପୂର୍ଣ୍ଣାର ଆଉ ଏକ ରୋଗ ଭାବେ ସେ ଗ୍ରହଣ କଲେ । ବଡ ହୋଇଗଲା ପରେ ପିତା ତା'ର ବିବାହ ପାଇଁ ପ୍ରସ୍ତୁତି ଚଳାଇଲେ । କିନ୍ତୁ ସେ ପ୍ରତିବାଦ କରି କହିଲା: ''ମୋର ଜୀବନ ଭଗବାନଙ୍କ ପ୍ରତି ସମର୍ପିତ । ମୁଁ ବିବାହ କରିବି ନାହିଁ ।''

ରତ୍ନଗୁପ୍ତ ତା'କୁ ବହୁତ ବୁଝାଇଲେ । ଭୟ ଓ ଧମକ ଦେଖାଇଲେ, କିନ୍ତୁ ସେ ଅବିଚଳିତ ରହିଲା । ଯେତେବେଳେ ସେ ନିଜେ ତା'ଙ୍କ ଚେଷ୍ଟାରେ ବିଫଳ ହେଲେ ସେ ପୁନଶ୍ଚ ଅଙ୍ଗଦ ମୁନିଙ୍କ ପାଖରେ ପହଞ୍ଚି ନିଜର ସମସ୍ୟା ଜଣାଇଲେ ଓ ତା'ଙ୍କୁ ଗୃହକୁ ଆମନ୍ତ୍ରଣ ଜଣାଇଲେ ।

ଅଙ୍ଗଦ ଅନ୍ନପୂର୍ଣ୍ଣାଙ୍କୁ କହିଲେ, ''ପ୍ରତ୍ୟେକ ମନୁଷ୍ୟ ମଧ୍ୟରେ ଭଗବାନ ବିଦ୍ୟମାନ ଅଛନ୍ତି । ତୁମର ପିତାମାତାଙ୍କ ମନୋନୀତ ପାତ୍ରକୁ ବିବାହ କର । ନିଜ ପତିଙ୍କ ମଧ୍ୟରେ ଭଗବାନଙ୍କୁ ଆରାଧନା କର । ଈଶ୍ୱର ତୁମ ପ୍ରତି ସଦୟ ହେବେ ଓ ତୁମେ ସନ୍ତାନର ଜନନୀ ହେବ । ସେହି ସନ୍ତାନ ମଧ୍ୟ ଭଗବାନଙ୍କର ଏକ ଅଂଶବିଶେଷ ହେବ । ପ୍ରତ୍ୟେକ ନାରୀ ଜନନୀ ହେବାକୁ ଚାହେଁ ।''

ଅନ୍ନପୂର୍ଣ୍ଣା ମୁନିଙ୍କ କଥାରେ ସମ୍ମତ ହେଲା । ବୈଭବ ନାମକ ଜଣେ ସୁଶୀଳ, ସମ୍ଭ୍ରାନ୍ତ ଯୁବକ ସହ ତା'ର ବିବାହ ଅନୁଷ୍ଠିତ ହେଲା । ବର୍ଷକ ପରେ ସେ ଏକ ସୁନ୍ଦର ପୁତ୍ରର ଜନନୀ ହେଲା । ଅନ୍ନପୂର୍ଣ୍ଣା ଅନୁଭବ କଲା, ସତେ କି ଭଗବାନ ପୁତ୍ର ରୂପରେ ତା' କୋଳରେ ଜନ୍ମ ନେଇଛନ୍ତି । ପତି-ପତ୍ନୀ ଦୁହେଁ ତା'ର ନାମ ରଖିଲେ- ବିଶ୍ୱେଶ୍ୱର ।

ବିଶ୍ୱେଶ୍ୱରକୁ ଗୋଟିଏ ପକ୍ଷରେ ପିତାମାତାଙ୍କର ଅପାର ସ୍ନେହ ମିଳୁଥିଲା । ଅପର ପକ୍ଷରେ ଏକ ଭକ୍ତିପୂତ ବାତାବରଣ । ଦେବ ଆରାଧନାର ସଂସ୍ପର୍ଶରେ ଆସି ଅତି ଅଳ୍ପ ବୟସରୁ ତା' ମନରେ ସାଂସାରିକ ସୁଖ ପ୍ରତି ବୈରାଗ୍ୟ ଭାବ ଜାଗ୍ରତ ହେଲା । ସେ ଈଶ୍ୱର-ଦର୍ଶନ ନିମନ୍ତେ ବ୍ୟାକୁଳ ହେଲା । ମୋକ୍ଷମାର୍ଗର ଅନ୍ୱେଷଣ କଲା । ଅନ୍ନପୂର୍ଣ୍ଣା ଏହା ଜାଣିପାରି ଖୁବ୍ ମନଦୁଃଖ କଲା ।

ବୈଭବ ମଧ୍ୟ ଏଥିପାଇଁ ବ୍ୟଥିତ ଥିଲେ । ସେ ପରାମର୍ଶ ଦେଲେ, ''ପୁତ୍ର ମନରେ ଦେବ-ଭକ୍ତି ଜାଗ୍ରତ ହେବାର କାରଣ ତୁମେ, ଏବେ ତା'କୁ ଭଗବାନଙ୍କ ଠାରୁ ଦୂରରେ ରଖିବାକୁ ଚେଷ୍ଟା କର ।

ପତିଙ୍କର ପରାମର୍ଶ ଅନ୍ନପୂର୍ଣ୍ଣାକୁ ଉଚିତ

ମନେହେଲା । ତା' ପରଦିନ ସେ ତା'ର ପୁତ୍ରକୁ କଠୋର ସ୍ୱରରେ କହିଲା: ''ଏହି ବୟସରେ ପିଲାମାନେ ଖେଳିବୁଲି ସମୟ ବିତାଉଛନ୍ତି । ଆଜିଠାରୁ ପୂଜାପାଠ ଛଡା ଅନ୍ୟ ପିଲାଙ୍କ ପରି ପାଠପଢି, ଖେଳିକୁଦି ସମୟ କଟାଇବାକୁ ହେବ ।''

ମାତାଙ୍କ କଥା ପାଳନ କରିବା ବିଶ୍ୱେଶ୍ୱର ପକ୍ଷେ ଅସମ୍ଭବ ଥିଲା । ଘରେ ରହିବାକୁ ପସନ୍ଦ କଲା ନାହିଁ । ଅରଣ୍ୟ ମଧ୍ୟକୁ ଯାଇ ଗୋଟିଏ ବୃକ୍ଷ ତଳେ ତପସ୍ୟା ଆରମ୍ଭ କଲା । ଭୋକ ଲାଗିଲେ, ଆଖି ବୁଜି ପ୍ରାର୍ଥନା କଲେ ଫଳମୂଳ ତା' ପାଖରେ ପହଞ୍ଚି ଯାଉଥିଲା । ବିଷଧର ସର୍ପ କି ହିଂସ୍ର ଜନ୍ତୁ ମଧ୍ୟ ତା' ପାଖ ପଶୁ ନ ଥିଲେ । ଏହି ପରି ସେ ଦଶବର୍ଷ କାଳ ତପସ୍ୟା କଲା । ଦଶବର୍ଷ ବୟସରେ ସେ ଘର ଛାଡି ଚାଲି ଆସିଥିଲା । ତେବେ ମଧ୍ୟ ଈଶ୍ୱର ଦର୍ଶନ ତା' ପକ୍ଷରେ ସମ୍ଭବ ହୋଇ ନ ଥିଲା ।

ଦିନେ ପ୍ରାତଃକାଳରେ ବିଶ୍ୱେଶ୍ୱର ଯଥାରୀତି ସରୋବରରେ ସ୍ନାନ କରୁଥିଲେ । ଏହି ସମୟରେ ଜଣେ ଶିକାରୀ ସେଠାରେ ପହଞ୍ଚିଲା । ସେ ବିଶ୍ୱେଶ୍ୱରଙ୍କୁ ଦେଖିବା କ୍ଷଣି କହିଲା, ''ପରମେଶ୍ୱର, ଆପଣ ଯେପରି ଅର୍ଜୁନଙ୍କୁ ଥରେ ଦର୍ଶନ ଦେଇଥିଲେ, ଆଜି ମୋତେ ମଧ୍ୟ ସେପରି ଦର୍ଶନ ଦେଲେ । ମୋର କି ଭାଗ୍ୟ ।'' ଏପରି କହି ସେ ଶ୍ରଦ୍ଧାରେ ହାତ ଯୋଡିଲେ । ''ମୁଁ ଜାଣେନା, ଆପଣ କିଏ ? କିନ୍ତୁ ଆପଣ ବୟସରେ ମୋ ଠାରୁ ବଡ ହେବେ । ମୋତେ ପ୍ରଣାମ କରନ୍ତୁ ନାହିଁ ।'' ବିଶ୍ୱେଶ୍ୱର ସରୋବର ବାହାରକୁ ଆସି କହିଲେ ।

ଶିକାରୀ କହିଲା: ''ଆପଣଙ୍କ ମୁଖମଣ୍ଡଳରେ ସୂର୍ଯ୍ୟଙ୍କର ଜ୍ୟୋତି ଚମକୁଛି । ଗଳାରେ ସର୍ପହାର ଲମ୍ବିଛି । ମୁଁ ଆପଣଙ୍କ ପାଦତଳେ ପଡୁଛି ।'' ଏପରି କହି ସେ ସାଷ୍ଟାଙ୍ଗ ପ୍ରଣିପାତ କଲା ।

ବିଶ୍ୱେଶ୍ୱର ସ୍ତମ୍ଭିତ ହୋଇ ପଡିଲେ । ସେ ତା'ଙ୍କ



ଗଳାରେ ହାତମାରି ଦେଖିଲେ, କୌଣସି ମାଳା ତା'ଙ୍କ ଗଳାରେ ଝୁଲୁ ନ ଥିଲା । ସେ କିଛି କହିବାକୁ ଗଲାବେଳେ ଶିକାରୀ କହିଲା: ''ବାଃ, ଭଗବାନ ମୋତେ ଦେଖା ଦେଲେ ଓ ପୁଣି ଅନ୍ତର୍ଦ୍ଧାନ ହୋଇଗଲେ । ମୋର କେଡେ ଭାଗ୍ୟ !'' ଏପରି କହି ଶିକାରୀ ସେଠାରୁ ଚାଲିଗଲା ।

''ମୁଁ ଆଉ ପରମେଶ୍ୱର ? ଭଗବାନ ମୋ ଶରୀରରେ ବିରାଜିତ ହୋଇ ନାହାନ୍ତି ତ ? ମୁଁ ତା'ଙ୍କୁ ଦେଖିପାରୁନି ଅଥଚ ଅନ୍ୟମାନେ ମୋ ଠାରେ ଭଗବାନଙ୍କୁ ଦର୍ଶନ କରୁଛନ୍ତି ।'' ଏପରି ଦ୍ୱନ୍ଦରେ ପଡି ବିଶ୍ୱେଶ୍ୱର ସ୍ଥିର କଲେ ଯେ ସେ ଜନସାଧାରଣଙ୍କ ସମ୍ମୁଖକୁ ଯିବେ ଓ ସତ୍ୟ କ'ଣ ଜାଣି ପାରିବେ ।

ସେ ରତ୍ନଗିରି ଅଭିମୁଖେ ଯାତ୍ରା କରିବା ସମୟରେ ସାଧୁ ଅଙ୍ଗଦଙ୍କ ସହ ରାସ୍ତାରେ ଭେଟ ହେଲା । ତା'ଙ୍କ ଶରୀରରେ ବାର୍ଦ୍ଧକ୍ୟର ଲକ୍ଷଣ ସ୍ପଷ୍ଟ ବାରି ହେଉଥିଲା । କଥାବାର୍ତ୍ତା ହେଉ ହେଉ ସେ ଜାଣି ପାରିଲେ ଏହି ଯୁବକ ରତ୍ନଗିରି ଯାଉଛନ୍ତି । ତେଣୁ ସେ କହିଲେ, ''ପୁତ୍ର, ପ୍ରଥମେ ଈଶ୍ୱରଙ୍କ ଦର୍ଶନ ଲାଭ କରିଥିଲି । ମାତ୍ର ଏବେ କେତେ ବର୍ଷ ହେଲା ଭଗବାନ ମୋ ଉପରେ ତୁଷ୍ଟ ନାହାନ୍ତି । ତେଣୁ ତା'ଙ୍କ ଦର୍ଶନ ପାଇ ପାରୁନାହିଁ । ରତ୍ନଗିରିରେ ଅନ୍ନପୂର୍ଣ୍ଣା ନାମ୍ନୀ ଜଣେ ପତିବ୍ରତା ସ୍ତ୍ରୀ ଅଛନ୍ତି । ତା'ଙ୍କର ସୁପୁତ୍ର ବିଶ୍ୱେଶ୍ୱର । ଥରେ ଦେବୀ ମୋତେ ସ୍ୱପ୍ନରେ କହିଲେ, ବିଶ୍ୱେଶ୍ୱରଙ୍କୁ ଦର୍ଶନ କଲେ ମୋର ଦୁଃଖ ଦୂର ହେବ । ତେଣୁ ପ୍ରତି ବର୍ଷ ମୁଁ ରତ୍ନଗିରି ଯାଇ ବିଶ୍ୱେଶ୍ୱରଙ୍କୁ ଦର୍ଶନ କରି ଆସୁଛି । ଏବେ ମୋର ସ୍ୱାସ୍ଥ୍ୟ ଠିକ୍ ନାହିଁ । ଆଉ ଯାଇପାରୁନାହିଁ ।

ସାଧୁଙ୍କର କଥା ବିଶ୍ୱେଶ୍ୱରଙ୍କୁ ସନ୍ଦେହରେ ପକାଇଲା । ସେ ଅଙ୍ଗଦଙ୍କୁ ପୂରା ବୃତ୍ତାନ୍ତ ଜଣାଇ କହିଲେ, ''ଦଶ ବର୍ଷ ହେଲା ମୁଁ ଅରଣ୍ୟରେ ତପସ୍ୟା କରୁଛି । କିନ୍ତୁ ଆପଣ କହୁଛନ୍ତି ଯେ ପ୍ରତି ବର୍ଷ ମୋତେ ଭେଟିବାକୁ ଯାଆନ୍ତି । ଏହା କିପରି ସମ୍ଭବ ହେବ ?''



ଅଙ୍ଗଦ ବିଶ୍ୱେଶ୍ୱରଙ୍କୁ ଭଲଭାବେ ଦେଖିବାକୁ ଚେଷ୍ଟା କରି କହିଲେ, ''ମୋର ଦୃଷ୍ଟିଶକ୍ତି କମିଗଲାଣି । ତେଣୁ ମୁଁ ତୁମକୁ ଚିହ୍ନି ପାରିଲି ନାହିଁ । ଏବେ ମୁଁ ସବୁକଥା ବୁଝିପାରୁଛି । ତୁମେ ମାତା ତୁମ ମଧ୍ୟରେ ଈଶ୍ୱରଙ୍କୁ ଦର୍ଶନ କରୁଥିଲେ ଓ ତୁମ ତାଙ୍କୁ ତ୍ୟାଗ କରି ଚାଲି ଆସିଲ, ପରମେଶ୍ୱର ତାଙ୍କ ଭକ୍ତ ହୃଦୟରେ ଦୁଃଖ ଦେବାକୁ ଚାହିଁଲେ ନାହିଁ । ତେଣୁ ସେ ତୁମ ରୂପ ଧାରଣ କରି ସେଠାରେ ରହୁଛନ୍ତି । ମୁଁ ମଧ କେତେ ମୂର୍ଖ ଯେ, ତୁମ ଘରକୁ ଯାଇ ଭଗବାନଙ୍କୁ ଦର୍ଶନ କରୁଛି । ଅଥଚ ସେହି ସତ୍ୟ ସହ ଅପରିଚିତ ଅଛି । ଭଗବାନ ନିଜେ ସେହି ଶିକାରୀ ରୂପରେ ଆସି

ତୁମକୁ ଘରକୁ ଫେରିବା ପାଇଁ ବାଧ କରିଛନ୍ତି । ଦଶବର୍ଷର ତପସ୍ୟା ପରେ ତୁମକୁ ଈଶ୍ୱର ପ୍ରାପ୍ତି ହୋଇଛି । ପରମାତ୍ମାଙ୍କୁ ମଧ ମୋହିତ କରିଦେବା ଭଳି ମାତୃ ପ୍ରେମରୁ ତୁମେ ଦଶ ବର୍ଷ ହେଲା ବଞ୍ଚିତ ହୋଇ ରହିଛ । ଏବେ ମାତୃଦେବୀଙ୍କ ମଧରେ ପରମଶ୍ୱରଙ୍କୁ ଦର୍ଶନ କରି ସୁଖରେ ବାକି କାଳ ବିତାଇଦେବ ।''

ବିଶ୍ୱେଶ୍ୱର ମୁନି ଅଙ୍ଗଦଙ୍କୁ ନମସ୍କାର ଜଣାଇ ଦ୍ରୁତ ଗତିରେ ଗୃହ ଅଭିମୁଖେ ବାହାରିଲା ।

ବେତାଳ ଏହି କାହାଣୀ ଶୁଣାଇବା ପରେ ରାଜାଙ୍କୁ ପ୍ରଶ୍ନ କଲା, ''ରାଜନ୍ ! ବିଶ୍ୱେଶ୍ୱରର ଜୀବନରେ ଲକ୍ଷଥିଲା ତପସ୍ୟା କରି ଭଗବାନଙ୍କୁ ଦର୍ଶନ କରିବା । ତେଣୁ ସେ ଶାରୀରିକ ସୁଖ ଓ ମାତୃପ୍ରେମ ତ୍ୟାଗ କରି ତପସ୍ୟା କରିବାକୁ ଅରଣ୍ୟକୁ ଚାଲି ଯାଇଥିଲା । ସଦା ଈଶ୍ୱରଙ୍କ ଠାରେ ନିମଜ୍ଜିତ ବିଶ୍ୱେଶ୍ୱରକୁ ମାତା ହିଁ ଈଶ୍ୱର ପରାମର୍ଶ ଦେବା ଅସଂଗତ ମନେ ହେଉ ନାହିଁ କି ? ଏହି କଥାରେ ମୋତେ କୌଣସି ପ୍ରକାରର ଧାର୍ମିକ ଚିନ୍ତନ ଅଥବା ତାତ୍ତ୍ୱିକ ଦୃଷ୍ଟିଭଙ୍ଗୀ ଜଣା ପଡୁନାହିଁ । ବାର୍ଦ୍ଧକ୍ୟ ଅସୁସ୍ଥତା ହେତୁ ସେ ଏପରି ଅବାନ୍ତର କଥା କହିଛନ୍ତି । ମୋର ଏହି ସନ୍ଦେହର ଉତ୍ତର ଜାଣି ମଧ ନୀରବ ରହିଲେ ତୁମର ମସ୍ତକ ଶତଧା ବିଦୀର୍ଣ୍ଣ ହେବ ।''

ବିକ୍ରମାର୍କ କହିଲେ, ''ଭଗବାନ କରୁଣାମୟ, ସର୍ବ ବିଦ୍ୟାମାନ ଅଟନ୍ତି । ସେ ଯେବେ, ଯେଉଁଠାରେ ଦର୍ଶନ ଦେବାକୁ ଇଚ୍ଛା କରିବେ, ଯେ କୌଣସି ରୂପରେ ଭକ୍ତକୁ ଦର୍ଶନ ଦେଇ ପାରିବେ । ବିଶ୍ୱେଶ୍ୱର ଏହି ରହସ୍ୟକୁ ବୁଝି ପାରି ନ ଥିଲେ । ଅଙ୍ଗଦ ଯେତେବେଳେ ବିଶ୍ୱେଶ୍ୱରଙ୍କୁ ଏହି କଥା କହିଲେ ଯେ ଶିକାରୀ ରୂପରେ ଭଗବାନ ତା'ଙ୍କୁ ଦର୍ଶନ ଦେଇଛନ୍ତି · ସେ ସ୍ଥିର କରିନେଲେ ଯେ, ତା'ଙ୍କ ତପସ୍ୟା ସଫଳ ହୋଇଛି । ଏହି ସତ୍ୟ ଜାଣିବା ପରେ ତା'ଙ୍କ ପକ୍ଷରେ ଅରଣ୍ୟକୁ ଯାଇ ତପସ୍ୟା କରିବା ଅନାବଶ୍ୟକ କାର୍ଯ୍ୟ ମନେ ହେଲା ଓ ସେ ମାତାଙ୍କ ନିକଟକୁ ଫେରି ଗଲେ । ତା'ଙ୍କ କାର୍ଯ୍ୟରେ ଅସଙ୍ଗତିର କୌଣସି ଲକ୍ଷଣ ନାହିଁ ।

ଅଙ୍ଗଦଙ୍କର ଧାର୍ମିକ ଓ ଆଧାତ୍ମିକ ପରିପକ୍ୱତା ଘଟିଥିବା ହେତୁ ସେ ତା'କୁ ମାତାଙ୍କ ମଧ୍ୟରେ ଦେବୀ ଦର୍ଶନ କରିବାକୁ ଉପଦେଶ ଦେଲେ । ଏହା ତା'ଙ୍କର ମତିଭ୍ରମ କିମ୍ବା ବାର୍ଦ୍ଧକ୍ୟ ଜନିତ ଅସୁସ୍ଥତା ନୁହେଁ ।

ଏହିପରି ରାଜାଙ୍କର ମୌନ ଭଙ୍ଗ କରିବାରେ ସଫଳ ହୋଇ ଶବ ଓ ଶବସ୍ଥିତ ବେତାଳ ପୁନଶ୍ଚ ବୃକ୍ଷ ଡାଳରେ ଝୁଲି ପଡିଲା ।

(କଳ୍ପିତ)



# ଅରଣ୍ୟ ସମୀପେ ଅଦ୍ଭୁତ ଆତିଥ୍ୟ



କେତେ ହଜାର ବର୍ଷ ତଳର କଥା । ଇଲ୍ୱଳ ଓ ବାତାପି ନାମରେ ଦୁଇ ରାକ୍ଷସ ଭାଇ ଥିଲେ । ନଗରଠାରୁ ଅନତିଦୂରରେ ଥିବା ଅରଣ୍ୟରେ ସେମାନେ ବାସ କରୁଥିଲେ । ପର ର ଧନସମ୍ପତ୍ତି ପାଇଁ ସେମାନଙ୍କ ମନରେ ଭୀଷଣ ଲୋଭ ଥିଲା । କିନ୍ତୁ ସେ ତା'କୁ ଏକ ଅଭିନବ ଉପାୟରେ ହାସଲ କରୁଥିଲେ ।

ନିଜର ଇଚ୍ଛା ମୁତାବକ ରୂପ ଧାରଣ କରିବା ପାଇଁ ସେମାନଙ୍କର ଶକ୍ତି ଥିଲା । ଇଲ୍ୱଳ ଜଣେ ଭଦ୍ର ଗୃହସ୍ଥଙ୍କ ରୂପ ଧାରଣ କରି ଅରଣ୍ୟ ମଧ ଦେଇ ପଥରେ ଚଳପ୍ରଚଳ ହେଉଥିଲା । ସେହି ପଥରେ ଅନେକ ସମୟରେ ବଣିକମାନେ ସହରକୁ ଯା'ଆସ କରୁଥିଲେ କିମ୍ବା ବ୍ରାହ୍ମଣ ମାନେ ରାଜାଙ୍କ ଦରବାରକୁ ଯାଉଥିଲେ । ସେ ସେମାନଙ୍କୁ ତା'ଘରେ ବିଶ୍ରାମ ନେବାପାଇଁ ଅନୁରୋଧ କରେ । ସେ ଏତେ ଭଦ୍ର ଓ ବିନୟୀ ମନେହୁଏ ଯେ ତା'ର ମନୋଭାବକୁ ନେଇ ଆଗନ୍ତୁକଙ୍କ ମନରେ ସନ୍ଦେହର ପ୍ରଶ୍ନ ନ ଥାଏ । ସେମାନେ ଆନନ୍ଦରେ ତା'ର ଅନୁରୋଧ ସ୍ୱୀକାର କରି ତା' ପଛେ ପଛେ ଯାଆନ୍ତି ।

ଇଲ୍ୱଳ ତା'ଙ୍କୁ ଭବ୍ୟ ସ୍ୱାଗତ ଜଣାଇ ନିଜ ପରିସରକୁ ନେଇ ଯାଏ ଓ ଏକ ଶୀତଳ ପୁଷ୍କରିଣୀ ଦେଖାଇ ଦେଇ ସ୍ନାନ କରିବାକୁ କହେ । ତା'ପରେ ତାଙ୍କୁ ବାରଣ୍ଡାରେ ବିଶ୍ରାମ ନେବାକୁ କହି, ଜଣାଇ ଦିଏ ଯେ ସେ ତା'ର ଅତିଥିଙ୍କ ପାଇଁ ଏକ ବିଶେଷ ଦିବାଭୋଜନର ବ୍ୟବସ୍ଥା କରିଛି ।

ପ୍ରକୃତରେ ଏକ ଭିନ୍ନ ଭୋଜନ ! ଏହା ଏକ ମେଷଶାବକର ମାଂସ । ଏକ ଅସ୍ୱାଭାବିକ ମେଷ ଶାବକ ନିଶ୍ଚୟ । ସେ ହେଉଛି ତା'ର ସାନଭାଇ ବାତାପି ଯିଏ କି ଏକ ମେଷଶାବକର ରୂପ ଧାରଣ କରି ମାଂସ ପାଇଁ କଟା ଯାଇଥାଏ ଓ ରନ୍ଧନ ହୋଇଥାଏ । ଅତିଥିମାନେ ଏତେକଥା ଜାଣିବାର ସୁଯୋଗ ନ ଥାଏ । ସେମାନେ ଆନନ୍ଦରେ ଖାଦ୍ୟ ଭକ୍ଷଣ କରନ୍ତି ।



ଇଲ୍ୱଳ, ସେମାନଙ୍କର ଆତିଥ୍ୟ ପ୍ରଦାନକାରୀ, ହଠାତ୍ ନିଜର ସାନ ଭାଇକୁ ସ୍ମରଣ କରେ ।

''ବାତାପି, ପ୍ରିୟ ବାତାପି, ତୁ କେଉଁଠି ?'' ସେ ଡାକ ଛାଡେ । ଅତିଥିମାନେ, ସେମାନଙ୍କ ପାକସ୍ଥଳୀରେ ଏକ ଅଦ୍ଭୁତ ପ୍ରକାର ଆଲୋଡନ ଅନୁଭବ କରନ୍ତି । ଆଲୋଡନ କଠୋର ବେଦନାରେ ରୂପାନ୍ତରିତ ହୁଏ । କ'ଣ ଘଟିବାକୁ ଯାଉଛି ବୁଝିବା ପୂର୍ବରୁ ସେମାନଙ୍କର ଉଦର ଫାଟିଯାଏ । ବାତାପି ଶରୀରର ଖଣ୍ଡବିଖଣ୍ଡିତ ଅଂଶ ବାହାରକୁ ବାହାରି ଆସେ । ଇଲ୍ୱଳ ତା'କୁ ସବୁ ଏକାଠି ସଜାଡି ରଖେ ଓ ଏକ ଯାଦୁ ବିଦ୍ୟା ପ୍ରୟୋଗ କରେ । ତା'ପରେ ଚମତ୍କାରିତା ଦେଖ, ଅକ୍ଷତ ବାତାପି ସଶରୀରେ ସହାସ୍ୟ ବଦନରେ ଉଭା ହୋଇଯାଏ ଓ ସେମାନେ ପରସ୍ପର କୋଳାକୋଳି ହୁଅନ୍ତି । କହିବା ବାହୁଲ୍ୟ, ଅତିଥିମାନଙ୍କର ଶୋଚନୀୟ ମୃତ୍ୟୁ ଘଟିଥାଏ । ଦୁଇ ରାକ୍ଷସ ଭାଇ ସେମାନଙ୍କର ମୃତ ଶରୀରକୁ ଜଙ୍ଗଲ ମଧ୍ୟକୁ ଟାଣି ନିଅନ୍ତି ଓ ଗାତ ଖୋଳି ପୋତି ଦିଅନ୍ତି ।

ଇଲ୍ୱଳ ଓ ବାତାପି କ୍ରମଶଃ ଧନୀ ହେବାରେ ଲାଗିଲେ । ବାସ୍ତବରେ ସେ ଇଲାକାରେ ସେ ଦୁଇଭାଇ ସବୁଠାରୁ ଅଧିକ ଧନୀ ହୋଇଗଲେ । ଲୋକମାନେ ତା'ଙ୍କର ଉନ୍ନତିର ଗୁପ୍ତ ରହସ୍ୟ ଜାଣି ନଥିଲେ । ସେମାନେ ଭାବୁଥିଲେ ଦୁଇଭାଇଙ୍କୁ କିଛି ଗୁପ୍ତ ଧନ ମିଳି ଯାଇଛି, ଯାହା କେତେକ ଧନୀ ବ୍ୟକ୍ତି ସନ୍ୟାସ ଗ୍ରହଣ କରିବାପରେ ଜଙ୍ଗଲରେ କେଉଁଠି ଲୁଚାଇ ରଖିଥିଲେ । ରାକ୍ଷସ ଦୁଇଙ୍କ ଘର ପାଖକୁ ଲାଗି କେହି ପଡୋଶୀ ନ ଥିଲେ, ଯିଏ ହୁଏତ ସେମାନଙ୍କର କାର୍ଯ୍ୟକଳାପ ସମ୍ପର୍କରେ କିଛି ସୁରାକ ପାଇ ପାରି ଥାଆନ୍ତା ।

ଭାରତର ଶ୍ରେଷ୍ଠ ଋଷିମାନଙ୍କ ମଧ୍ୟରେ ଅନ୍ୟତମ ହେଉଛନ୍ତି ଋଷି ଅଗସ୍ତ୍ୟ । ଏକଦା ଏପରି ହେଲା ଯେ, ଅଗସ୍ତ୍ୟ ଋଷିଙ୍କର କିଛି ଧନର ଆବଶ୍ୟକତା ପଡିଲା । ସେ କେତେକ ଧନୀଲୋକଙ୍କ ପାଖରେ ପହଞ୍ଚିଲେ ଓ ସେମାନଙ୍କଠାରୁ ସାହାଯ୍ୟ ଆଶା କଲେ । ସେମାନେ ତା'ଙ୍କୁ ସାହାଯ୍ୟ କରି ପାରିଥାଆନ୍ତେ କିନ୍ତୁ ସେମାନେ ଇଲ୍ୱଳ ଓ ବାତାପୀଙ୍କ ପାଖରୁ ସାହାଯ୍ୟ ଆଣିବାକୁ ପରାମର୍ଶ ଦେଲେ । ସେ ଯେତେ ଧନ ଚାହିଁବେ, ସେତେ ଧନ ଦେବା ପରି କ୍ଷମତା ସେଇ ଦୁଇ ଭାଇଙ୍କର ଅଛି ।

ଅଗସ୍ତ୍ୟ ରାକ୍ଷସ ଭାଇ ଦୁହିଁଙ୍କୁ ଭେଟିବାକୁ ବାହାରିଲେ । ସେମାନେ ତା'ଙ୍କୁ ସାହାସ୍ୟ ବଦନରେ ହାତ ଯୋଡି ସ୍ୱାଗତ ଜଣାଇଲେ । ''ହେ ସାଧୁବର, ଆପଣଙ୍କ ପାଦ ତଳେ ପଡି ଆମ ଗୃହ ଧନ୍ୟ ହୋଇଯାଇଛି !'' -ବଡ ଭାଇ ତା'ଙ୍କୁ ଗୃହ ଭିତରକୁ ପାଛୋଟି ନେବା ସମୟରେ ବିନୀତ କଣ୍ଠରେ କହିଲେ ।

ମୁଁ ଆପଣଙ୍କ ପାଇଁ ସବୁଠାରୁ ଉତ୍ତମ

ମେଷଶାବକ ବଧ କରି ଖାଦ୍ୟ ପ୍ରସ୍ତୁତ କରି ଆଣୁଛି ।'' ଇଲ୍ୱଳ ଅନୁରୋଧ କଲା । ତା'ର ଭାଇ, ସେତେବେଳକୁ ମେଷଶାବକରେ ପରିଣତ ହୋଇ ସାରି ଅଗଣାରେ ଠିଆ ହୋଇ ଋଷିଙ୍କୁ ପ୍ରଭାବିତ କରିବା ପାଇଁ ଚେଷ୍ଟା କରୁଥିଲା ।

''କି ଦୁଃଖର କଥା । ଏତେ ସୁନ୍ଦର ପ୍ରାଣୀର ମୃତ୍ୟୁର କାରଣ ମୁଁ ହେବି ! ନିରାମିଷ ଭୋଜନ ମିଳି ପାରିବ କି ?'' ଅତିଥି ପ୍ରସ୍ତାବ ଦେଲେ ।

''ବ୍ୟସ୍ତ ହୁଅନ୍ତୁ ନାହିଁ ଆଜ୍ଞା, ଆପଣ ତା'କୁ ଖାଇଲେ ବି ସେ ମୋ ପାଖରୁ କୁଆଡେ ଯିବନି ।'' ଇଲ୍ୱଳର ଉତ୍ତର ଥିଲା ପ୍ରହେଳିକାମୟ ।

ମେଷଶାବକ ବଧ ହେଲା ଓ ଇଲ୍ୱଳ ତା'କୁ ରନ୍ଧନ କରି ଅତିଥିଙ୍କ ସମ୍ମୁଖରେ ଏକ ବ୍ୟଞ୍ଜନ ଭାବେ ପରଷିଦେଲେ । ଋଷି ବିନା ବାକ୍ୟବ୍ୟୟରେ ତା'କୁ ସେବନ କଲେ । ଗୃହକର୍ତ୍ତା ଅର୍ଥପୂର୍ଣ୍ଣ ଭାବେ ହସି ପାଖରେ ଠିଆ ହୋଇଥିଲେ ।

''ବହୁତ ଧନ୍ୟବାଦ, ପ୍ରକୃତରେ ବ୍ୟଞ୍ଜନ ଖୁବ୍ ସ୍ୱାଦିଷ୍ଟ ଥିଲା ।'' ଋଷି ମନ୍ତବ୍ୟ ପ୍ରଦାନ କଲେ ।

''ଆଜ୍ଞା, ଏବେ ଆପଣଙ୍କୁ ଜଣାଇବାର କଥା ଯେ, ଯିଏ ଥରେ ଏ ବ୍ୟଞ୍ଜନ ଖାଇଛି, ଜୀବନରେ ତା'କୁ ଆଉ ଥରେ କିଛି ଖାଇବାର ସୁଯୋଗ ମିଳିନାହିଁ ।'' ଜୋର୍‌ରେ ଅଟ୍ଟହାସ୍ୟ କରି ରାକ୍ଷସ କହିଲା । ତା'ପରେ ନିଜକୁ ଶାନ୍ତ କରି ସେ ତା'ର ଭାଇକୁ ଡାକିଲା ।

ଋଷି ତଳେବସି ତା'ଙ୍କ ଉଦରକୁ ଆସ୍ତେ ଆଉଁଷୁଥିଲେ । ''ବାତାପି, ବାତାପି, ଏବେ ତୋ'ର ଫେରି ଆସିବାର ବେଳ ହୋଇଗଲା ଭାଇ ମୋର !'' ଇଲ୍ୱଳ ବାରମ୍ବାର ଚିତ୍କାର କଲା । କିନ୍ତୁ ଅତିଥିଙ୍କର ଉଦର ଫାଟିବାର କୌଣସି ଲକ୍ଷଣ ଦିଶୁ ନ ଥାଏ । ବିସ୍ମିତ, ବାଷ୍ପାକୁଳ ଚିତ୍ତରେ ସେ ଋଷିଙ୍କ ଅତି ପାଖକୁ ଯାଇ ନିରେଖି ଚାହିଁଲା ।

''ପ୍ରିୟ ବତ୍ସ, ତୁମ ଭାଇ ଆଉ କେବେ ବି ଫେରିବ ନାହିଁ ମୁଁ ତା'କୁ ଉତ୍ତମ ରୂପେ ଜୀର୍ଣ୍ଣ କରି ସାରିଛି ।'' ଋଷି ତା'କୁ ଶାନ୍ତ ଭାବେ ଜଣାଇଦେଲେ ।

ଇଲ୍ୱଳ ଭୟରେ ଥରିଲା ଓ ଅଗସ୍ତ୍ୟଙ୍କ ପାଦ ତଳେ ପଡିଗଲା । ଋଷି ଯାହା ଚାହୁଁଥିଲେ ସେ ତା'ଙ୍କୁ ଅକାତରରେ ପ୍ରଦାନ କଲା ଓ ଭବିଷ୍ୟତରେ ଏପରି କୁକର୍ମ ନ କରିବା ପାଇଁ ପ୍ରତିଜ୍ଞା କଲା ।

ଏହି ପରି ଇଲ୍ୱଳ ଓ ବାତାପିଙ୍କର କୁକର୍ମର ଅନ୍ତ ଘଟିଲା । ଋଷିଙ୍କର ଶକ୍ତି ଆଗରେ ରାକ୍ଷସଙ୍କର ଯାଦୁକରୀ ବିଦ୍ୟା ହାର ମାନିଲା । -ବିନ୍ଦୁସାର



# ଭାରତ ଆବିଷ୍କାର

## ପ୍ରଶ୍ନୋତ୍ତରୀ

ଦୀର୍ଘ ପ୍ରତୀକ୍ଷାର ଅନ୍ତ ଘଟିଛି ଓ ଛୁଟିଦିନ ଆରମ୍ଭ ହୋଇ ଯାଇଛି । ତୁମେ ଏବେ ସ୍କୁଲ୍, କ୍ଲାସ୍, ପଢ଼ାବହି, ଖାତାକୁ ପଚାଶ, ଷାଠିଏ ଦିନ ପାଇଁ ଭୁଲି ଯାଇପାର । ତୁମ ଭିତରୁ ଅନେକଙ୍କ ଘର ବାହାରେ ଆଉ ଏକ ଘର'ର ସନ୍ଧାନରେ ବାହାରି ଯାଇପାର । ଏହି ମାସର ପ୍ରଶ୍ନୋତ୍ତରୀ ସେପରି ସବୁ ସ୍ଥାନ ମାନଙ୍କ ସମ୍ପର୍କରେ, ଯେଉଁଠିକୁ ତୁମେ ଭ୍ରମଣରେ ଯାଇପାର, ଯଦି ତୁମେ ଆଗରୁ ସେଠାକୁ ଯାଇ ନଥିବ, ଏହି ପ୍ରଶ୍ନୋତ୍ତରୀ ସେହି ସବୁ ସ୍ଥାନ ଓ ସେଠାକାର ଲୋକ ମାନଙ୍କ ସମ୍ବନ୍ଧରେ ତୁମ ମନରେ ଅନ୍ତତଃ ଧାରଣା ସୃଷ୍ଟି କରିପାରିବ ।

୧. କର୍ଣ୍ଣାଟକର ଗୁଲବର୍ଗା ଏକଦା ଏକ ରାଜ୍ୟର ରାଜଧାନୀ ଥିଲା । ତୁମେ ସେ ରାଜ୍ୟର ନାମ ଜାଣ କି ? କିଏ, କେବେ ସେ ରାଜ୍ୟ ପ୍ରତିଷ୍ଠା କରିଥିଲେ ?

୨. ଏକ ଜଳ ବିଭାଜିକା ଦୁଇଟି ଦ୍ୱୀପପୁଞ୍ଜକୁ ପୃଥକ କରିଛି । ସେହି ବିଭାଜିକା ଓ ଦ୍ୱୀପପୁଞ୍ଜର ନାମ କ'ଣ ?

୩. ପୂର୍ବ ଭାରତର ଏକ ସହରକୁ ବିଖ୍ୟାତ ପରିବ୍ରାଜକ ଇବାନ ବତୁତା ଆଲ୍-କାଟାକା ନାମରେ ନାମିତ କରିଥିଲେ । ସେ ସହରର ଏବେକାର ନାମ କ'ଣ ?

୪. ପ୍ରସିଦ୍ଧ ଲେଖକ ରୁଡ୍‌ୟାର୍ଡ କିପ୍ଲିଙ୍ଗ୍ ଭାରତର ଏକ ସହରରେ ଜନ୍ମଗ୍ରହଣ କରିଥିଲେ । ତାହା କେଉଁ ସହର ?

୫. ଭାରତର ଏକ ମହାନଗରୀର ପୁରାତନ ନାମ ଥିଲା ସାହାଜାହାନାବାଦ । ତାହା କେଉଁ ମହାନଗରୀ ?

୬. ଆଉ ଏକ ମହାନଗରୀର ନାମ ଥିଲା ଆଲିନଗର । ତାହା ବର୍ତ୍ତମାନ କେଉଁ ମହାନଗରୀ ଅଟେ ?

୭. ପାଣ୍ଡ୍ୟ ବଂଶର ରାଜଧାନୀ ମଧ୍ୟ ଦେଇ ଏକ ନଦୀ ପ୍ରବାହିତ ହେଉଥିଲା । ସେହି ସହର ଓ ନଦୀର ନାମ ଉଲ୍ଲେଖ କର ।

୮. ରାମେଶ୍ୱରମ୍ ମୂଳଭୂଖଣ୍ଡରେ ଅବସ୍ଥିତ ନୁହେଁ, ଏହା ମଧ୍ୟରେ ଏକ ଜଳଧାରା ରହିଛି । ତୁମେ ତା'ର ନାମ ଜାଣ କି ?

(ଉତ୍ତର ପରବର୍ତ୍ତୀ ସଂଖ୍ୟାରେ)

### ଏପ୍ରିଲ୍ ମାସର ପ୍ରକାଶିତ ପ୍ରଶ୍ନର ଉତ୍ତର

୧. ୧୯୮୦-ରୋମ୍

୨. କ୍ରିଷ୍ଟିଆନ୍ ମେଡିକାଲ କଲେଜ୍, ଭେଲୋର

୩. *ଇନ୍ ଏ ଫ୍ରି ଷ୍ଟେଟ୍*

୪. କରାଚି (ସେତେବେଳର ଭାରତରେ)

୫. ଗୋଦାବରୀ

୬. ଅଟଳ ବିହାରୀ ବାଜପେୟୀ

୭. ସିଂହ

୮. ଦକ୍ଷିଣ ଗଙ୍ଗୋତ୍ରୀ

୯. ହାଇଦ୍ରାବାଦର ବେଗମ୍‌ପେଟ୍

୧୦. ଆଣ୍ଡାମାନ ଓ ନିକୋବର ଦ୍ୱୀପପୁଞ୍ଜର ବ୍ୟାରେନ୍ ଦୀପପୁଞ୍ଜ



# ଉପକାର

ସୀତାରାମ ଜଣେ ବୈଦ୍ୟ ନୁହଁନ୍ତି, ତେବେ ମୁଣ୍ଡ ବ୍ୟଥା ପାଇଁ ତା'ଙ୍କ ପାଖରେ ଫଳପ୍ରଦ ଔଷଧ ରହିଛି । ସେ କେତୋଟି ସାଧାରଣ ଗଛରୁ କିଛି ପତ୍ର ତୋଳି ଆଣନ୍ତି । ତା'କୁ ସମାନ ମାପରେ ଓଜନ କରନ୍ତି । ତା'ପରେ ପତ୍ର ସବୁକୁ ଚିକ୍କଣ ଭାବେ ବାଟି ରୋଗୀର ମଥା ଉପରେ ପତଳା ଲେପ ଦିଅନ୍ତି । ବାସ୍, କିଛି କ୍ଷଣ ମଧ୍ୟରେ ମୁଣ୍ଡ ବ୍ୟଥା ଉଭେଇ ଯାଏ । ସତେ ଯେପରି ମୁଣ୍ଡ ବ୍ୟଥା ସେ ତା'ଙ୍କ ହାତରେ ମଥାରୁ ପୋଛି ଆଣିଲେ !

ପ୍ରତ୍ୟେକ ଦିନ ଅତି କମ୍‌ରେ ଜଣେ ଲୋକ ତା'ଙ୍କ ପାଖକୁ ଏଇ କାମରେ ଆସନ୍ତି । ଗଛର ପତ୍ରକୁ ସଠିକ୍ ମାପ କରିବା ପାଇଁ ଆସିଥିବା ଲୋକକୁ ସାଙ୍ଗରେ ତରାଜୁ ଆଣିବା ପାଇଁ ସେ କହନ୍ତି । ତା'ପରେ ସେ ନିଜେ ବାରିପଟକୁ ଯାଇ ଅନାବନା ପତ୍ର ତୋଳି ଆଣନ୍ତି । ସେ ନିଜର ଏହି ଚିକିତ୍ସା ସେବା ପାଇଁ ଅର୍ଥ ଦାବୀ କରନ୍ତି ନାହିଁ । କିନ୍ତୁ କେହି ଯଦି ନିଜ ଇଚ୍ଛାରେ କିଛି ପ୍ରଦାନ କଲେ, ତାହା ହରଷ ଚିତ୍ତରେ ସେ ଗ୍ରହଣ କରନ୍ତି ।

ସୀତାରାମଙ୍କ ଘର ସମ୍ମୁଖରେ ଜାନକୀରାମଙ୍କ ଘର । ଜଣେ ଉପକାରୀ ଲୋକ ଭାବରେ ଗ୍ରାମରେ ତା'ଙ୍କର ପ୍ରସିଦ୍ଧି ଅଛି । ଗ୍ରାମର କାହାଘରେ କିଛି ସାହାଯ୍ୟ ଲୋଡା ହେଲେ, ନ ଡାକୁଣୁ ସେ ଯାଇ ସେଠାରେ ହାଜର ହୋଇ ଯାଆନ୍ତି ।

ଜାନକୀରାମ ଆଚାର ବ୍ୟବସାୟ କରନ୍ତି । ତା'ଙ୍କ ପ୍ରସ୍ତୁତ ଆଚାର ସ୍ୱାଦିଷ୍ଟ ହେବା ସାଙ୍ଗକୁ ଗୁଣାତ୍ମକ ମଧ୍ୟ ଅଟେ । ତେଣୁ ଆଖପାଖ ଗ୍ରାମ ଓ ସହରରେ ତା'ଙ୍କ ଆଚାରର ଚାହିଦା ବେଶୀ । ଆଚାର ତିଆରି କରିବା ପାଇଁ ସେ ଯେଉଁ ପଦାର୍ଥ ବ୍ୟବହାର କରନ୍ତି, ତା'ର ଭାଗମାପ ଠିକ୍ ରଖିବା ପାଇଁ ସେ ତରାଜୁ ବ୍ୟବହାର କରନ୍ତି । ଯେହେତୁ ତା'ଙ୍କ ଘରେ ତରାଜୁ ଥାଏ । ତେଣୁ ଔଷଧ ପାଇଁ ଆସୁଥିବା ଲୋକମାନେ ସାଥିରେ ତରାଜୁ ଆଣନ୍ତି ନାହିଁ । ସେମାନେ ଜାନକୀରାମଙ୍କ ଘରୁ ତରାଜୁ ମାଗି ଆଣନ୍ତି ।

ଏ ସବୁ ତ ଠିକ୍ କଥା । କିନ୍ତୁ ସୀତାରାମ ମନରେ ଗୋଟିଏ କଥାକୁ ନେଇ କ୍ଷୋଭ ଥାଏ ଯେ, ତା'ଙ୍କ ଅପେକ୍ଷା ଜାନକୀରାମକୁ ଲୋକମାନେ ଅଧିକ ପ୍ରଶଂସା କରୁଛନ୍ତି କାହିଁକି ? ସେମାନେ

ନନ୍ଦକୁମାର



କାହାକୁ ଟଙ୍କା ପଇସା ରୂପରେ ସହାୟତା ଦିଅନ୍ତି ନାହିଁ ।

ସୀତାରାମଙ୍କ ମନରେ ଦୁଃଖ ଆସେ ଯେ ସେ ଔଷଧର ପ୍ରାପ୍ୟ ବାବଦକୁ କାହାରି ଠାରୁ ଅର୍ଥ ମାଗନ୍ତି ନାହିଁ । ରୋଗୀଟିଏ ଆସିଲେ ତା'ର ବିନା ପାଉଣାରେ ଚିକିତ୍ସା କରନ୍ତି । ତେବେ ମଧ୍ୟ ଲୋକମାନେ ତା'ଙ୍କର ପ୍ରଂଶସା କରନ୍ତି ନାହିଁ । ସେଥିପାଇଁ ସେ ସର୍ବଦା ଚିନ୍ତିତ ଥାନ୍ତି । କିନ୍ତୁ ତା'ଙ୍କର ଦୃଢ଼ ବିଶ୍ୱାସ ଥାଏ ଯେ, ଦିନେ ନା ଦିନେ ଜାନକୀରାମର ଅସଲ ରୂପ ଜଣା ପଡିବ ଓ ଲୋକମାନେ ଜାନକୀମରାମ ବଦଳରେ ତା'କୁ ପ୍ରଶଂସା କରିବେ ।

ଦିନେ ସୀତାରାମ ନିଜେ ଭୀଷଣ ମୁଣ୍ଡ ବ୍ୟଥାର ଶିକାର ହେଲେ । ସେ ନିଜ ଔଷଧର ପ୍ରୟୋଗ କରିବାକୁ ଚାହିଁଲେ । ବାରିକୁ ପତ୍ର ତୋଳିବା ପାଇଁ ଯିବା ବେଳକୁ ଝିଅକୁ ଜାନକୀରାମଙ୍କ ଘରୁ ତରାଜୁ ମାଗି ଆଣିବା ପାଇଁ କହିଲେ ।

ସୀତାରାମଙ୍କର ପତ୍ର ତୋଳିବା କାମ ସମ୍ପୂର୍ଣ୍ଣ ନ ହେଉଣୁ ତା'ଙ୍କ ଝିଅ ସେଠାରେ ପହଞ୍ଚି କହିଲା, ମଉସା କହୁଛନ୍ତି ଯେ, ତା'ଙ୍କ ଘରେ ତରାଜୁ ନାହିଁ ।

ସୀତାରାମ କହିଲେ, ''ସେ ଆଉ କାହାକୁ ଦେଇଛନ୍ତି କି କ'ଣ ପଚାରିଲୁ ନାହିଁ ?''

''ମୁଁ ପଚାରିବାକୁ ଚାହୁଁଥିଲି ବାବା ! କିନ୍ତୁ ମୁଁ ଜାଣି ପାରିଲି ଯେ, ମାଉସୀ ଭିତରେ ତରାଜୁରେ କ'ଣ ମାପ କରୁଛନ୍ତି । ତେଣୁ ସେମାନେ ଦେବାକୁ ଚାହୁଁ ନାହାଁନ୍ତି । ମୁଁ କାହିଁକି ପଚାରିବି ଯେ, ସେମାନେ କାହାକୁ ଦେଇଛନ୍ତି କି କ'ଣ ?'' ସୀତାରାମର ଝିଅ କହିଲା ।

''ସମ୍ଭବତଃ ତା'ଙ୍କର କିଛି ଜରୁରୀ ଦରକାର ଥିବ । ତୁ କହିଲୁନି ଯେ, ଆମେ ଚଞ୍ଚଳ

ତା'ର ଗୁଣଗାନ କରୁଛନ୍ତି କାହିଁକି ? ଏଇ କଥାକୁ ନେଇ ସୀତାରାମଙ୍କ ମନରେ ଜାନକୀରାମଙ୍କ ପ୍ରତି ଦ୍ୱେଷଭାବ ଥାଏ । ତା'ଙ୍କ ତୁଳନାରେ ଜାନକୀରାମଙ୍କୁ କାହିଁକି ଲୋକମାନେ ଆଦର କରନ୍ତି, ତା'ର ରହସ୍ୟ ଜାଣିବା ପାଇଁ ସୀତାରାମ ଲାଗି ପଡିଲେ ।

ଜାନକୀରାମ ଖୁସିବାସିଆ ମଣିଷ । କାହା ଉପରେ ବିରକ୍ତି ହୁଅନ୍ତି ନାହିଁ । କାହାରିକୁ ଆଘାତ ହେବା ଭଳି କଥା ପଦିଏ କହନ୍ତି ନାହିଁ । ଏପରିକି କାହାର ଅନିଷ୍ଟ ହେବା ଭଳି କିଛି କାମ କରନ୍ତି ନାହିଁ । ଧନୀ, ଗରିବ ମଧ୍ୟରେ ସେ ତାରତମ୍ୟ ଦେଖନ୍ତି ନାହିଁ । ସେ ସମସ୍ତଙ୍କ ସହ ଭଲ ସମ୍ପର୍କ ରଖନ୍ତି । କିନ୍ତୁ ନିଜ ବେପାର ମାମଲାରେ ସେ ଖୁବ୍ କଡା । ଯେଉଁ ଦର ଠିକ୍ କରନ୍ତି, ତା'ଠାରୁ ପଇସାଟିଏ କମ୍ କି ଅଧିକ ନିଅନ୍ତି ନାହିଁ । କାହାରି ସହିତ ଧାର ଉଧାର ବେପାର କରନ୍ତି ନାହିଁ ।

ଫେରାଇଦେବା ।''

''କହିଥାଆନ୍ତି ଯେ, ସେ ମୋତେ କେବଳ କହିଲେ ତରାଜୁ ନାହିଁ । ସେ କ'ଣ ମୋତେ କହିଲେ ଯେ ତରାଜୁରେ ସେ କାମ କରୁଛନ୍ତି ।'' ସୀତାରାମଙ୍କ ଝିଅ ବ୍ୟସ୍ତ ହୋଇ କହିଲା ।

ଏବେ ସୀତାରାମଙ୍କ ମୁଣ୍ଡକୁ ଗୋଟିଏ କଥା ବୁଝିଗଲା । ଗ୍ରାମରେ ପରୋପକାରୀ ବୋଲାଉଥିବା ଜାନକୀରାମ ସମସ୍ତଙ୍କୁ ତରାଜୁ ଦେଇଛି ଅଥଚ ତା'ଙ୍କୁ ମନା କରି ଦେଉଛି । ଏହାର ଅର୍ଥ ହେଉଛି, ତା'ର ହୃଦୟ ନିର୍ମଳ ନୁହେଁ । ତା'ର ଅସଲ ରୂପ ପଦାରେ ପକାଇବାକୁ ହେବ । ସେ ତୁରନ୍ତ ଜାନକୀରାମର ଘରେ ପହଞ୍ଚିଲେ । ସେତେବେଳେ ଜାନକୀରାମ ତରାଜୁରେ କ'ଣ ଓଜନ କରୁଥିଲେ । ତା'ଙ୍କୁ ଦେଖିବାକ୍ଷଣି ସେ କହିଲେ, ''ଆସନ୍ତୁ ସୀତାରାମ ବାବୁ ! ଆଚାର କାମ ହେଲାବେଳେ ମୁଁ ଆଉ କେଉଁ ତରାଜୁ ବ୍ୟବହାର କରେ ନାହିଁ, ସେଥିପାଇଁ ଝିଅକୁ କହିଲି, ତରାଜୁ ନାହିଁ କିଛି ଖରାପ ଭାବିବେ ନାହିଁ ।''

''ଏଥିରେ ଖରାପ ଭାବିବାର କ'ଣ ଅଛି ! ତୁମେ ଜାଣିଛ ଯେ ପ୍ରତିଦିନ ମୋ ଘରକୁ ରୋଗୀ ଆସୁଛନ୍ତି । ତେଣୁ ଆଉ ଗୋଟିଏ ତରାଜୁ କିଣି ପକାଇଥିଲେ ଭଲ ହୋଇଥାଆନ୍ତା । ଆଚାର କାମ ଠିକ୍ ଚାଲନ୍ତା ଆଉ ମୋର ବି ସୁବିଧା ହୁଅନ୍ତା ।'' ସୀତାରାମଙ୍କ କଣ୍ଠରେ ବ୍ୟଙ୍ଗଭାବ ଥିଲା ।

ଏହା ଶୁଣି ଜାନକୀରାମ ଚକିତ ହୋଇ କହିଲେ, ''ଆପଣ କହିବା ପୂର୍ବରୁ ମୁଁ ସେ କାମ ସାରିଦେଇଛି । ଯେବେଠାରୁ ଆପଣ ମୋ ଘର ସମ୍ମୁଖରେ ରହୁଛନ୍ତି, ସେବେଠାରୁ ତରାଜୁର ଚାହିଦା ବଢ଼ିଯାଇଛି । ତେଣୁ ମୁଁ ଆଉ ଗୋଟିଏ ତରାଜୁ କିଣି ଦେଲି । ଏବେ ସେହି ତରାଜୁ ଆମ୍ବ ଓଜନ କରିବାକୁ ଭୀମ ନେଇ ଯାଇଛି ।''

ଏହା ଶୁଣି ସୀତାରାମଙ୍କର ମଥା ଲଜ୍ଜାରେ ତଳକୁ ହୋଇଗଲା । ସେ ନିଜର ଭୁଲ ଧାରଣା ବୁଝିପାରିଲେ । ତା'ଙ୍କୁ ବୁଝିବା ପାଇଁ ବିଳମ୍ବ ହେଲା ନାହିଁ ଯେ ଲୋକମାନେ ଜାନକୀରାମଙ୍କୁ କାହିଁକି ପ୍ରଶଂସା କରନ୍ତି । ଜାନକୀରାମ ତା'ଙ୍କ ଝିଅକୁ ତରାଜୁ ନାହିଁ କହିଥିବା କଥାଟି ଏକଦମ୍ ସତ୍ୟ କାରଣ ସେହି ତରାଜୁ ଏବେ ଭୀମ ନେଇଯାଇଛି । ଏହା ଭାବି ସେ ଜାନକୀରାମଙ୍କୁ ପ୍ରଶଂସା କରି କହିଲେ: ''ପରୋପକାର ଏକ ସହଜାତ ଗୁଣ ଆଉ ସ୍ୱଭାବତଃ ତୁମେ ଜଣେ ମହାନ ଉପକାରୀ ମଣିଷ ।''



# ଚତୁର ତେନାଲୀରାମ



ରାଜା କୃଷ୍ଣଦେବ ରାୟଙ୍କ ପ୍ରିୟପାତ୍ର ହେବା ପୂର୍ବରୁ ତେନାଲୀ ରାମ ରାଜ ଦରବାରରେ ପ୍ରବେଶ କରିବାକୁ ଅନେକବାର ଚେଷ୍ଟା କରିଥିଲେ । କିନ୍ତୁ ବହୁ ଥର ସେ ମୁଖ୍ୟ ଦ୍ୱାରପାଳ ଓ ତା'ର ସହଯୋଗୀ ଦ୍ୱାରା ଅପମାନିତ ହୋଇଛନ୍ତି । ସେମାନେ ତା'ଙ୍କୁ ଯିବାକୁ ଦିଅନ୍ତି ନାହିଁ, ଆଉ ତା'ଙ୍କ ଶରୀରର ଆକୃତିକୁ ନେଇ ବ୍ୟଙ୍ଗ କରନ୍ତି ।

ଥରେ ରାଜା ଓ ତା'ଙ୍କ ପାରିଷଦବର୍ଗ ଗୋଟିଏ ନୃତ୍ୟ କାର୍ଯ୍ୟକ୍ରମ ଉପଭୋଗ କରୁଥିଲେ । କାହାରିକୁ ଭିତରକୁ ପ୍ରବେଶ ନିମନ୍ତେ ଅନୁମତି ନ ଦେବାକୁ ରାଜା ଆଦେଶ ଦେଇଥିଲେ । ତେନାଲୀ ରାମ ଯଥାରୀତି ମୁଖ୍ୟଦ୍ୱାର ପାଖରେ ପହଞ୍ଚିଲେ ଓ ପ୍ରହରୀମାନେ ତା'ଙ୍କୁ ବାଧାଦେଲେ, ଏପରିକି ନିଷ୍ଠୁର ଭାବେ ଠେଲି ତଳେ ପକାଇ ଦେଲେ ।





ତେନାଲୀ କିଛି ନ ଘଟିବା ଭଳି ଭୂମିରୁ ଉଠିଲେ ଓ ଧୂଳି ଝାଡି ପକାଇଲେ । ''ତୁମେ ଦୁଇଜଣ କି ବଳୁଆ ! ଏପରି ଶାରୀରିକ ଶକ୍ତି ପାଇଁ ତୁମେ ପୁରସ୍କୃତ ହେବା କଥା !'' ସେ ବ୍ୟଙ୍ଗ ମନ୍ତବ୍ୟ ଦେଲେ । ମାତ୍ର ପ୍ରହରୀ ଦୁଇଜଣ ତା'ଙ୍କ କଥାକୁ ବିଶ୍ୱାସ କରିଗଲେ ଓ ମୁଖ୍ୟ ପ୍ରହରୀ କହିଲା: ''ଆଜ୍ଞା ! ଆପଣ ରାଜାଙ୍କ ଦ୍ୱାରା ଅନେକଥର ପୁରସ୍କୃତ ହେଉଛନ୍ତି, ଆମକୁ କିଏ ପଚାରୁଛି ।''

''କିଛି ଚିନ୍ତା କରନି । ମୋତେ ଭିତରକୁ ଯିବାକୁ ଦିଅ । ଆଜି ରାଜା ମୋତେ ଯାହା ଦେବେ ମୁଁ ତୁମ ସହିତ ଭାଗ କରିବି । ଅଧା ତୁମେ ନେବ ଆଉ ଅଧା ତୁମ ସହକର୍ମୀମାନଙ୍କୁ ବାଣ୍ଟିଦେବ ।'' ସେ ମୁଖ୍ୟ ପ୍ରହରୀକୁ କହିଲେ । ଲୋଭାସକ୍ତ ହୋଇ ସେମାନେ ତେନାଲୀଙ୍କୁ ଭିତରକୁ ଛାଡିଦେଲେ ।





ଦରବାର ମଧ୍ୟକୁ ଯାଇ, ତେନାଲୀ ଧୀରେ ନୃତ୍ୟମଞ୍ଚ ଉପରକୁ ଚଢ଼ିଗଲେ ଓ ମୁଣ୍ଡ ତଳକୁ, ଗୋଡ ଉପରକୁ କରିବା ଭଙ୍ଗୀରେ ସେଠାରେ ରହିଗଲେ । ନୃତ୍ୟାଙ୍ଗନା କ୍ରୋଧରେ ନୃତ୍ୟ କରି ଚାହିଁଲା । ରାଜା ଅଗ୍ନିଶର୍ମା ହୋଇ ଉଠିଲେ, ''କିଏ ସେ ମୁର୍ଖ ! ନିକାଲ ତା'କୁ ଏଠୁ !'' ସେ ଗର୍ଜନ କଲେ ।



ତେନାଲୀ ପାଦରେ ଠିଆ ହୋଇପଡି କହିଲେ, ''ମହାରାଜ, ଆପଣ ଯେପରି ନୃତ୍ୟକଳାରେ ମୁଗ୍ଧ ହୋଇ ଶିଳ୍ପୀଙ୍କୁ ପୁରସ୍କୃତ କରିବେ, ମୋତେ ମୋର ଏହି ଅଭିନୟ ପାଇଁ କିଛି ପୁରସ୍କାର ଦେବେ ନାହିଁ କି ?'' ''ପୁରସ୍କାର ! ହଁ ତୁମକୁ ନିଶ୍ଚୟ ପୁରସ୍କାର ମିଳିବ ।'' ଏପରି କହି ରାଜା ତା'ଙ୍କ ଅନୁଚରକୁ ଆଦେଶ ଦେଲେ, ''ତା'ଙ୍କୁ ଏକଶତ ବେତ ପ୍ରହାର ଦିଅ ।''



''ଧନ୍ୟବାଦ ମଣିମା ! ମୁଁ ଆପଣଙ୍କ ମୁଖ୍ୟ ପ୍ରହରୀ ଓ ତା'ଙ୍କ ସାଥି ମାନଙ୍କୁ କଥା ଦେଇଥିଲି ଯେ, ଆଜିର ପୁରସ୍କାର ସେମାନଙ୍କୁ ଦେଇଦେବି ।'' ତେନାଲୀଙ୍କ କଥା ଶୁଣି ରାଜା କିଛି ବୁଝି ପାରିଲେ ନାହିଁ । ତେନାଲୀ କିପରି ପ୍ରହରୀ ମାନଙ୍କ ଦ୍ୱାରା ଅପମାନିତ ହୁଅନ୍ତି ଓ ସେଦିନ କିପରି ସର୍ତ୍ତରେ ଭିତରକୁ ଆସିଲେ, ସବିଶେଷ ବର୍ଣ୍ଣନା କଲେ ।



ମୁଖ୍ୟ ପ୍ରହରୀ ଓ ତା'ଙ୍କ ସହକାରୀଙ୍କୁ ତୁରନ୍ତ ଡକାଗଲା । ରାଜା ସେ ଦୁଇଜଣଙ୍କୁ ପୁରସ୍କୃତ କରିବାରେ ଅଧିକ କଠୋର ହୋଇଗଲେ, କାରଣ ତେନାଲୀଙ୍କର ପ୍ରାପ୍ୟ ବେତ ପ୍ରହାରଠାରୁ, ସେମାନଙ୍କର ଦଣ୍ଡ ଯଥେଷ୍ଟ ଅଧିକ ଥିଲା ଓ ସେଦିନଠାରୁ ରାଜଦରବାରରେ ପ୍ରବେଶ ନିମନ୍ତେ ତେନାଲୀଙ୍କୁ କେହି ବାଧା ଦେଲେ ନାହିଁ ।

# ଗ୍ରୀଷ୍ମକାଳର ଶୀତଳତା

ପବନରେ ଉଷ୍ଣତା ଥିଲା । ମନେ ହେଉଥିଲା ଯେପରି ପବନରୁ ନିଆଁ ବାହାରୁଛି । ସେଇ କାରଣରୁ ଜଳାଶୟର ଜଳ ବହୁତ ଗରମ ଥିଲା । ସେଇ ଜଳାଶୟର ଗୋଟିଏ ବେଙ୍ଗ ଗରମ ସହି ପାରିଲା ନାହିଁ । ଡିଆଁ ମାରି କୂଳରେ ଆସି ପହଞ୍ଚିଗଲା । ସେଇ ସ୍ଥାନଟି ଛାଇ ଛାଇ ଲାଗୁଥିଲା କିନ୍ତୁ ତା'କୁ କ'ଣ ଜଣାଥିଲା ଯେ ଗୋଟିଏ ସାପର ଫଣାରୁ ଆସୁଥିଲା ସେଇ ଛାଇ ।

ସୂର୍ଯ୍ୟଙ୍କ ତପ୍ତ କିରଣ ସହ୍ୟ କରି ନ ପାରିବା କାରଣରୁ ଆଉ ଗୋଟେ ସାପ ଥକି ଯାଇଥିଲା ଓ ହାଲିଆ ହୋଇ ଗୋଟିଏ ମୟୂର ପାଖକୁ ଆସିଲା । ସେ ସେଠାରେ ବେହୋଶ ହୋଇ ନିଦରେ ଶୋଇ ପଡିଲା ।

ଋତୁ ସଂହାର କାବ୍ୟର ରଚୟିତା କବି କାଳିଦାସ । ସେ ଗ୍ରୀଷ୍ମଋତୁର ବର୍ଣ୍ଣନା କରିବାକୁ ଯାଇ ତା'ଙ୍କ କାବ୍ୟରେ ଏପରି ଦୃଶ୍ୟର ବର୍ଣ୍ଣନା କରିଥିଲେ ।



ଗ୍ରୀଷ୍ମର ନାମ ଶୁଣିବା ମାତ୍ରେ ଆମ ମନକୁ ଖରା, ଲୁ, ଝାଳ କଥା ମନକୁ ଆସେ ଓ କାମ ପ୍ରତି ଅନାଗ୍ରହ ସୃଷ୍ଟି ହୁଏ । କିନ୍ତୁ ଏପରି ଅଗ୍ନିବର୍ଷୀ ଗ୍ରୀଷ୍ମର ପ୍ରକୃତି ଆମ ପାଇଁ ସଜାଡି ରଖିଥାଏ ଅଙ୍ଗୁର, କମଳା, ଖଜୁର, ଆମ୍ବ ଓ ମଲ୍ଲୀ, ଚମେଲୀ ପରି ଫୁଲ ।

ଗ୍ରୀଷ୍ମର ପ୍ରଭାବରୁ ରକ୍ଷା ପାଇବା ପାଇଁ ଆଜିକାଲି ବତାନୁକୂଳିତ ଯନ୍ତ୍ର, ଏୟାର କୁଲର୍, ପଙ୍ଖା, ଆଇସକ୍ରିମ୍, ଶୀତଳ ପାନୀୟ ଆଦି ଆମେ ବ୍ୟବହାର କରୁ । ଏସବୁ ମଧ୍ୟ କେତେକ ପରିମାଣରେ ଆମକୁ ଗରମରୁ ରକ୍ଷା କରେ। କିନ୍ତୁ ପୂର୍ବ କାଳରେ ଘର ସବୁ ଏପରି ତିଆରି ହୋଇଥିଲା ଯେ, ସେଥିରେ ଅଧିକ ଗରମ ହେଉ ନ ଥିଲା । ସେଥିପାଇଁ ସେମାନେ ଆବଶ୍ୟକୀୟ ସତର୍କତା ଗ୍ରହଣ କରୁଥିଲେ । ସାଧାରଣତଃ ଗ୍ରାମର ସାଧାରଣ ଲୋକମାନେ କୁଡିଆ ଘରେ ବାସ କରନ୍ତି ଓ ସେମାନେ ଘରକୁ ଅବାଧରେ ପବନ ଯାଆସ କରିବାର ବ୍ୟବସ୍ଥା କରି ଥାଆନ୍ତି । ବଡ ବଡ ପ୍ରାସାଦର ନିର୍ମାଣରେ ମଧ୍ୟ ଏହି ଦିଗରେ ଧ୍ୟାନ ଦିଆଯାଉଥିଲା । ୧୪୬୨ ଖ୍ରୀଷ୍ଟାବ୍ଦରେ ମଧ୍ୟପ୍ରଦେଶର ଓର୍ଛା ପ୍ରଦେଶରେ ମଧୁକରଶାହାଙ୍କ ଶାସନ ପ୍ରଚଳିତ ଥିଲା । ତା'ଙ୍କ ଶାସନ କାଳରେ ରାୟପରବୀନ ନାମ୍ନୀ ଜଣେ କବୟିତ୍ରୀ ଥିଲେ । ତା'ଙ୍କର ଏକ ସୁନ୍ଦର ବାସଭବନ ଥିଲା, ବିଭିନ୍ନ ପ୍ରକାରର ଫୁଲ ଫଳ ଗଛ ମଧ୍ୟରେ ଏକ ଦୁଇମହଲା

କୋଠା । ମାତ୍ର ଏହାର ଉଚ୍ଚତା ଏତେ କମ୍ ଯେ ପ୍ରଥମ ମହଲା ମାଟି ଭିତରେ ଥିଲା । ଗ୍ରୀଷ୍ମକାଳରେ ଦ୍ୱିତୀୟ ମହଲା ତାତି ଯାଉଥିଲେ ମଧ୍ୟ ତଳ ମହଲା ଥଣ୍ଡା ରହୁଥିଲା । 'ଫୁଲବାଗ' ନାମକ ଏହି ଭବନର ନିମ୍ନ ମହଲାରେ ଉପରେ ଥିବା ଉଦ୍ୟାନବନରେ ଜଳ ଫୁଆରା ସୃଷ୍ଟି କରା ଯାଇଥିଲା । ଏହିପରି ମୃଦୁ ଗତିରେ ଜଳବୁନ୍ଦା ପଡିବାର ବ୍ୟବସ୍ଥା କରା ଯାଇଥିଲା ।

ରାଣା ଜଗତସିଂହ ମେବାର ର ଶାସକ ଥିଲେ । ସେ ମାର୍ବଲ ପଥରରେ ସୁପ୍ରସିଦ୍ଧ ସରୋବର ଭବନ (ଲେକ୍ ପ୍ୟାଲେସ୍)ର ନିର୍ମାଣ କରାଇଥିଲେ । ଏକ ସରୋବର ପାଖରେ ଏହି ଭବନ ହୋଇଥିବାରୁ ଏହା ସର୍ବଦା ଥଣ୍ଡା ରହେ ।

ଗ୍ରୀଷ୍ମ ଛୁଟି ବିତାଇବା ପାଇଁ ଆମ ଦେଶର ଲୋକମାନେ ସିମ୍ଲା, ଡେରାଡୁନ୍, ମଶୋରୀ, ରାନିକେଟ୍, ଉଦ୍‌କାମଣ୍ଡ, ଦାର୍ଜିଲିଂ, ମହାବଳିଶ୍ୱର, ନୈନିତାଲ ଆଦି ସ୍ଥାନକୁ ଯାଆନ୍ତି । ସେଠାରେ ଛୁଟି କାଟିବା ପାଇଁ ଆବଶ୍ୟକୀୟ ବ୍ୟବସ୍ଥା ଅଛି । ସେଠାରେ ବ୍ରିଟିଶ ଅମଳର ଅତିଥି ଭବନ ରହିଛି । ସେମାନେ ଆମ ଦେଶର ଗରମ ସହ୍ୟ କରି ପାରୁ ନ ଥିଲେ । କେତେକ ଗ୍ରୀଷ୍ମକାଳୀନ ରୋଗରେ ପୀଡିତ ହୋଇ ମୃତ୍ୟୁ ବରଣ କରୁଥିଲେ । ତେଣୁ ସେମାନେ ଶୀତଳ ପାର୍ବତ୍ୟୀୟ ଅଞ୍ଚଳରେ ସୁନ୍ଦର ଭବନ ମାନ ନିର୍ମାଣ କରାଉଥିଲେ ଓ ସେଠାରେ ଗ୍ରୀଷ୍ମ କାଳରେ ରହୁଥିଲେ ।

୧୮୫୦ ମସିହା ଯାଏଁ ଆମ ଦେଶରେ ବରଫ ତିଆରି ହୋଇ ପାରୁ ନ ଥିଲା । ବ୍ରିଟିଶ୍ ଲୋକମାନେ ବରଫ ବିନା ଗରମ ସହି ପାରୁ ନ ଥିଲେ । ମାଡ୍ରାସ୍‌ର ମାରିନା ସମୁଦ୍ରତଟ ନିକଟରେ ବରଫ ସୁରକ୍ଷିତ ରଖିବା ପାଇଁ ସେମାନେ 'ଆଇସ୍ ହାଉସ୍' ମଧ୍ୟ ତିଆରି କରିଥିଲେ ।



ରାଜସ୍ଥାନ ଓ ଗୁଜୁରାଟ ଅଞ୍ଚଳରେ ଅତ୍ୟଧିକ ଗ୍ରୀଷ୍ମ ଅନୁଭୂତ ହୁଏ । ୪୨ ରୁ ୫୨ ଡିଗ୍ରୀ ସେଲ୍‌ସିୟସ୍ ଯାଏଁ ତାପମାତ୍ରା ରହେ । ତେଣୁ ଏଠାକାର ପୁରୁଷମାନେ ବଡ ବଡ ପଗଡି ପିନ୍ଧିଥାନ୍ତି ।

ଗୁଜୁରାଟରେ ରାଜା, ରାଣୀମାନେ ଯେଉଁ ରାଜମାର୍ଗ ଦେଇ ଯାଉଥିଲେ, ତା'ର ପାଖପାଖି ସ୍ଥାନ ମାନଙ୍କରେ ପ୍ରାୟ ୨୦୦ ଫୁଟ ଗଭୀରତାର ବିଶାଳ କୂପ ଖୋଳା ଯାଉଥିଲା । ଏହା ଯାତ୍ରା କାଳରେ ତୃଷ୍ଣା ମଧ୍ୟ ମେଣ୍ଟାଉଥିଲା । ପଞ୍ଚଦଶ ଶତାବ୍ଦୀର ବୈରସିଂହ ବାଘେଲାଙ୍କ ନିର୍ମିତ 'ଅଡଲାଜବାବ' ଖୁବ୍ ପ୍ରସିଦ୍ଧ ଅଟେ ।

ଯୋଧପୁର ଓ ବହପୁର ଅଞ୍ଚଳରେ ଘରକୁ ନୀଳ କିମ୍ବା ଧଳା ରଙ୍ଗ କରି ଦିଆଯାଉଥିଲା । ଏହି ରଙ୍ଗ ଗରମ ଓ ଆଲୋକ ପ୍ରତିହତ କରିପାରେ, ତେଣୁ ଏହା ଘରକୁ ଥଣ୍ଡା ପହଞ୍ଚାଏ ।

ବିଜୁଳି ପଙ୍ଖାର ବ୍ୟବହାର ହେବା ଆଗରୁ ଆମ ଦେଶର ଲୋକମାନେ ତାଳପତ୍ରର ପଙ୍ଖା ବ୍ୟବହାର କରୁଥିଲେ । ରଙ୍ଗବେରଙ୍ଗର ସୁନ୍ଦର ପଙ୍ଖା ତିଆରି

କଳାରେ ଆମ ଲୋକଙ୍କର ଦକ୍ଷତା ଅଛି । ରାଜା ରାଜୁତା ଲୋକେ ହାତୀଦାନ୍ତ କିମ୍ୱା ଚନ୍ଦନ କାଠରେ ପ୍ରସ୍ତୁତ ପଙ୍ଖା ବ୍ୟବହାର କର୍‌ଥିଲେ । କାଳିଦାସ ତା'ଙ୍କ କାବ୍ୟରେ ଲେଖିଛନ୍ତି ଯେ ଚନ୍ଦନ ଜଳରେ ପଙ୍ଖାକୁ ବୁଡା ଯାଉଥିଲା । ବ୍ରିଟିଶ ଅଧିକାରୀମାନେ ପବନ ପାଇବା ପାଇଁ ଅନ୍ୟ ପ୍ରକାରର ବ୍ୟବସ୍ଥା କରିଥିଲେ । ସେମାନେ ଛାତରେ କନା ବାନ୍ଧି ଦେଉଥିଲେ । ଜଣେ ଲୋକ ରସିରେ ତା'କୁ ଟାଣୁଥିଲା ଓ ପବନ ହେଉଥିଲା ।

ଗ୍ରୀଷ୍ମ ଉତ୍ତାପରୁ ରକ୍ଷା ପାଇବା ପାଇଁ ପୁରୁଖା ଲୋକମାନେ କେତେ ପ୍ରକାରର ଉପାୟ କରିଥିଲେ । ସକାଳେ, ସଞ୍ଜେ ଘର ଚାରିପାଖରେ ପାଣି ଛାଟୁଥିଲେ । ଝରକାରେ ବେଣାଚେରର ମସିଣା ଟାଣି ଦେଉଥିଲେ । ସେଥିରେ ସୁଗନ୍ଧିତ ଜଡିବୁଟି ରଖୁଥିଲେ ଓ ତା'କୁ ବାରମ୍ୱାର ପାଣିରେ ଓଦା କରି ଦେଉଥିଲେ ।

ଜଳ, ଦହି ପ୍ରଭୃତିକୁ ମାଟିର ନୂଆ ପାତ୍ରରେ ରଖୁଥିଲେ, ଫଳରେ ସେ ସବୁ ଥଣ୍ଡା ରହୁଥିଲା । କେତେଜଣ ମୁଣ୍ଡ ଧୋଇ ଗାଧୋଉଥିଲେ ଓ କେତେକ ଥଣ୍ଡାତେଲ ବ୍ୟବହାର କରୁଥିଲେ । ଗୋଲାପ ପାଖୁଡାରେ ମହୁ ମିଶାଇ ଗୁଲକନ୍ଦ ପ୍ରସ୍ତୁତ କରି ଖାଉଥିଲେ ।

ପଇଡ ପାଣି, ଲେମ୍ବୁରସ, କାକୁଡି ଓ ଅନ୍ୟାନ୍ୟ ଫଳ ଯଥେଷ୍ଟ ପରିମାଣରେ ଖାଉଥିଲେ । ଦେହରେ ଚନ୍ଦନ ବୋଳୁଥିଲେ ।

ସେହି ସମୟର ପାନୀୟ କହିଲେ ଗୁଡ, ଲେମ୍ବୁରସ, ଅଳେଇଚ ଗୁଣ୍ଡ, ଶୁଣ୍ଠିକୁ ମିଶାଇ ସର୍ବତ ପ୍ରସ୍ତୁତ କରୁଥିଲେ ଓ ପିଉଥିଲେ । ଏହା ଶରୀରକୁ ଶୀତଳ କରେ ବୋଲି ସେମାନେ ବିଶ୍ୱାସ କରୁଥିଲେ । ଉତ୍ତର ଭାରତର ଯେପରି ଲସି ପ୍ରସିଦ୍ଧ ଅଟେ, ସେହିପରି ଦକ୍ଷିଣ ଭାରତରେ ଘୋଳଦହି ଖୁବ୍ ପ୍ରସିଦ୍ଧ ।

ଗୁଜୁରାଟରେ ଆମ୍ବରୁ ପ୍ରସ୍ତୁତ ସରବତ୍, ବଙ୍ଗଳାରେ ବେଲପଣା, ଦେଶର ଅନ୍ୟାନ୍ୟ ସ୍ଥାନରେ ଗୁଡ, ଲେମ୍ବୁରସ ଓ ଦହି ମିଶାଇ ପ୍ରସ୍ତୁତ ହେଉଥିବା ସର୍ବତ ମଧ୍ୟ ପ୍ରସିଦ୍ଧ ଅଟେ ।

ଗ୍ରୀଷ୍ମ ଋତୁରେ ଆମ୍ବ ପ୍ରଚୁର ଫଳିଥାଏ । ବିଭିନ୍ନ ପ୍ରକାରର ଆମ୍ବରୁ, ପାନୀୟ, ଆଚାର ପ୍ରସ୍ତୁତ ହୁଏ । ତ୍ରୟୋଦଶ ଶତାବ୍ଦୀ କାଳରୁ ମୋଗଲମାନେ ନୂଆ ନୂଆ କିସମର ଆମ୍ବ ଆମ ଦେଶକୁ ଆମଦାନୀ କରାଇ ଥିଲେ ।

ଗରମ ଦିନରେ ଖରାକୁ ବାହାରିବା ଉଚିତ୍ ନୁହେଁ ।



# ଯେଉଁଠାରେ ଈଶ୍ୱର ହିଁ ରାଜା



କିଛି ଦିନ ତଳେ ଆମେ ପଢ଼ିଥିଲେ ଯେ ଜଣେ ରାଜାଙ୍କୁ ଭଗବାନ ଭାବେ ପୂଜା କରା ଯାଉଥିଲା । ଏବେ ଆଉ ଏକ କାହାଣୀ ପଢ଼ିବା, ଯେଉଁଠାରେ ଭଗବାନଙ୍କୁ ରାଜା ଭାବେ ପୂଜା କରାଯାଏ । ମଧ୍ୟ ପ୍ରଦେଶର ଓର୍ଛାଠାରେ ଥିବା ରାମ ରାଜା ମନ୍ଦିରକୁ ଆସ । କିମ୍ବଦନ୍ତୀ କହେ ରାଜା ରାମଙ୍କର ଏହି ମନ୍ଦିର ନିର୍ମାଣ କରିଥିଲେ ବୁନ୍ଦେଲ । ରାଜବଂଶର ମଧୁକର ଶାହା ଦ୍ୱାରା ୧୫୦୦ ଖ୍ରୀଷ୍ଟାବ୍ଦରେ । ସେ ଥିଲେ କୃଷ୍ଣଭକ୍ତ ଓ ତା'ଙ୍କ ପତ୍ନୀ ରାଣୀ ଗଣେଶ, ଭଗବାନ ରାମଙ୍କୁ ପୂଜା କରୁଥିଲେ ।

କହାଣୀ ଅନୁସାରେ ଥରେ ମଧୁକର ଶାହା ତା'ଙ୍କ ପତ୍ନୀଙ୍କୁ ସଙ୍ଗରେ ନେଇ ବୃନ୍ଦାବନ ଯିବା ପାଇଁ ଇଚ୍ଛା ପ୍ରକାଶ କଲେ । କିନ୍ତୁ ରାଣୀ ମନା କରିଦେଲେ ଓ ପ୍ରଭୁ ଶ୍ରୀରାମଙ୍କ ଜନ୍ମସ୍ଥଳୀ ଅଯୋଧ୍ୟା ଯିବା ପାଇଁ ଚାହିଁଲେ । ମଧୁକର ରାଣୀଙ୍କ ଉପରେ କ୍ରୋଧ ପ୍ରକାଶ କଲେ ଓ ରାମଙ୍କୁ ଅଯୋଧ୍ୟାରୁ ଆଣିବା ପାଇଁ ରାଣୀଙ୍କୁ ଆହ୍ୱାନ କଲେ । ରାଣୀ ଏହାକୁ ଗୁରୁତ୍ୱର ସହ ଗ୍ରହଣ କଲେ । ସେ ଅଯୋଧ୍ୟା ଯାଇ ସେଠାରେ ଏକ ବର୍ଷ ପ୍ରାର୍ଥନା କଲେ ।

ଦିନେ ରାତିରେ, ପ୍ରଭୁ ଶ୍ରୀରାମ ସ୍ୱପ୍ନରେ ରାଣୀଙ୍କୁ ଦେଖା ଦେଲେ ଓ ତା'ଙ୍କ ସହିତ ଯିବା ପାଇଁ ଏହି ସର୍ତ୍ତରେ ରାଜି ହେଲେ ଯେ, ସେ ତା'ଙ୍କ ମନ୍ଦିରରେ ପ୍ରଭୁ ରାମ ନୁହେଁ, ରାଜା ରାମ ଭାବରେ ପୂଜିତ ହେବେ । ରାଣୀ ସମ୍ମତ ହେଲେ ଓ ତା'ଙ୍କ ସ୍ୱପ୍ନର ପ୍ରଭୁଙ୍କ ପ୍ରତିମା ତା'ଙ୍କୁ ପ୍ରାପ୍ତ ହେଲେ ।

ସେହି ସର୍ତ୍ତରେ ମଧୁକର ଶାହା ଓ ରାଣୀ ଓର୍ଛାଠାରେ ରାଜାରାମଙ୍କର ସେହି ପ୍ରତିମା ସ୍ଥାପନ କଲେ । ଏହା ହେଉଛି ଭାରତରେ ପ୍ରଭୁ ଶ୍ରୀରାମଙ୍କର ଏକମାତ୍ର ମନ୍ଦିର ଯେଉଁଠାରେ ତା'ଙ୍କୁ ରାଜା ରୂପରେ ପୂଜା କରାଯାଏ ।

ଏହିପରି କିମ୍ବଦନ୍ତୀ ପ୍ରମାଣ କରେଯେ କେତେ ସୁନ୍ଦର ଥିଲା, ମଣିଷର ବିଶ୍ୱାସ ଓ ପ୍ରାର୍ଥନାର ପରମ୍ପରା !

# ବିହାରର ଲୋକ କଥା

# ବଳବାନ ଓ ବୁଦ୍ଧୁ ପିଶାଚ

*ବିହାର ଆମ ଦେଶର ଉତ୍ତରପୂର୍ବ ଅଞ୍ଚଳରେ ଅବସ୍ଥିତ । ଏହି ପ୍ରଦେଶର ନାମ କରଣ 'ବିହାର' ଶବ୍ଦରୁ ସୃଷ୍ଟ ଯାହାର ଅର୍ଥ ବୌଦ୍ଧ ବିହାର । ଅନେକ ଶତାବ୍ଦୀ ତଳେ ବିହାର ବୌଦ୍ଧ ଧର୍ମର ପୀଠ ଭାବେ ପରିଚିତ ହେଉଥିଲା । ଗୌତମବୁଦ୍ଧ, ବୌଦ୍ଧ ଧର୍ମର ପ୍ରତିଷ୍ଠାତା, ଯେ ଲୁମ୍ବିନୀରେ ଜନ୍ମ ଗ୍ରହଣ କରିଥିଲେ ଓ ବୁଦ୍ଧଗୟା ରେ ନିର୍ବାଣ ଲାଭ କରିଥିଲେ । ପାଟଳିପୁତ୍ର- ଶିକ୍ଷା ଓ ଧର୍ମର ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥଳୀ, ଯେଉଁଠାରେ ସମ୍ରାଟ ଅଶୋକ ତାଙ୍କର ରାଜଧାନୀ ପ୍ରତିଷ୍ଠା କରିଥିଲେ । ସମ୍ପ୍ରତି ଏହା ପାଟଣା ଭାବେ ଖ୍ୟାତ ଓ ଏହା ବିହାର ର ରାଜଧାନୀ ।*

*ବିହାର ଭାରତବର୍ଷର ନବମ ବୃହତମ ପ୍ରଦେଶ, ଯାହାର ଆୟତନ ୯୪,୧୬୩,୦୦ ବର୍ଗ କି.ମି. । ଏହାର ଜନ ସଂଖ୍ୟା ୮୨,୮୭୮,୭୯୬ ଓ ଏହା ଭାରତବର୍ଷର ଦ୍ୱିତୀୟ ଜନ ବହୁଳ ପ୍ରଦେଶ । ଏହାର ଉତ୍ତରରେ ନେପାଳ ଓ ଏହାର ପଶ୍ଚିମରେ ଉତ୍ତରପ୍ରଦେଶ, ପୂର୍ବରେ ପଶ୍ଚିମବଙ୍ଗ ଓ ଦକ୍ଷିଣରେ ଝାଡଖଣ୍ଡ ଅବସ୍ଥିତ । ବିହାରର ସରକାରୀ ଭାଷା ହିନ୍ଦୀ । ହିନ୍ଦୀ ଭାଷାରେ କଥା ବାର୍ତ୍ତା କଲେ ମଧ୍ୟ ଏହାର କଥିତ ଭାଷା ଭୋଜପୁରୀ ଓ ମୈଥିଳୀ ।*

ସୀତାପୁର ଗ୍ରାମରେ ବଳବାନ ନାମକ ଜଣେ ବଳୁଆ ଓ ଚାଲାଖ ମଲ୍ଲଯୋଦ୍ଧା ବାସ କରୁଥିଲେ । ସାରା ପ୍ରଦେଶରେ ସେ ଥିଲା ସର୍ବୋତ୍କୃଷ୍ଟ ଯୋଦ୍ଧା । ଆଖପାଖ ଅଞ୍ଚଳର କେହି ତା'କୁ ପରାସ୍ତ କରି ପାରୁ ନଥିଲେ । ତେଣୁ ତା' ମନରେ ଗର୍ବ ଜାତ ହେଲା ଓ ସେ ଖୁବ୍ ଫୁଟାଣି ମାରୁଥିଲା ।

ଥରେ ହାଟରେ ଗ୍ରାମବାସୀମାନେ ଗପସପ କରୁଥିଲେ । ବଳବାନ୍ ସେଠାରେ ପହଞ୍ଚି ଫୁଟାଣି



ମାରିଲା, "ମୁଁ କାହାକୁ ଭୟ କରେ ନାହିଁ, ଏପରିକି ଭୁତ ହେଉ କି ରାକ୍ଷସ।"

ଗ୍ରାମବାସୀମାନେ ତା'ର ବଡ଼ କଥା ଶୁଣି ଶୁଣି ବିରକ୍ତ ହୋଇ ପଡିଥିଲେ। ସେମାନେ ତା'କୁ ପଚାରିଲେ: "ଆଚ୍ଛା, ପିଶାଚ ମାନଙ୍କୁ ଡର କି ନାହିଁ ? ପାନିଗନ୍ଧ ଉପତ୍ୟକା ରେ ଉପଦ୍ରବ କରିଥିବା ପିଶାଚକୁ ତୁମେ ହରାଇ ପାରିବ ?"

ବଳବାନ ଉତ୍ତର ଦେଲା: "ସେ ଉପତ୍ୟକା ବିଷୟରେ ମୋର ଝାପ୍‌ସା ମନେ ପଡୁଛି। କିନ୍ତୁ ସେଠାରେ ପିଶାଚ ଥିବାର କାହିଁ ମୋର ମନେ ପଡୁନି ତ !"

ଜଣେ ବୁଢ଼ାଲୋକ ବୁଝାଇଦେଲେ, "ତାନ୍‌ପୁର ଓ ରାମ୍‌ପୁର ସହର ମଝିରେ ପାନିଗନ୍ଧ ଉପତ୍ୟକା। ସେ ଅଞ୍ଚଳର ରାସ୍ତା ଅତି ଖରାପ। ବାଟ ସାରା ବଡ ବଡ ପଥର, ମୁଣ୍ଡିଆ, ଖାଲ ଆଉ ସୁଡଙ୍ଗ ପଡିବ। କେତେକ ସ୍ଥାନରେ ପାହାଡ ଉପରେ ବଡ ପଥର ଖଣ୍ଡସବୁ ଏପରି ଝୁଲି ରହିଛି ଯେ, କେତେବେଳେ କାହା ମୁଣ୍ଡରେ ପଡ଼ିବ କହି ହେବନାହିଁ।"

"ରାସ୍ତା କି ପଥର ମୋ ପାଇଁ ବଡ ସମସ୍ୟା ନୁହେଁ। ମୁଁ ସହଜରେ ସେ ସବୁ ପାର ହୋଇଯିବି।" ବଳବାନ ଉତ୍ତର ଦେଲା।

"କିନ୍ତୁ ମୋ ଠାରୁ ପୁରା କାହାଣୀ ଶୁଣ। ଉପତ୍ୟକାର ପ୍ରକୃତ ବିପଦ ପ୍ରାକୃତିକ ନୁହେଁ ଅତିଭୌତିକ। ପିଶାଚ ମାନେ ଭୟଙ୍କର ପ୍ରାଣୀ। ଯେଉଁ ମନୁଷ୍ୟ ସେଠାକୁ ଯିବେ ତା'ଙ୍କୁ ସେମାନେ ମାରି ତା'ର ମାଂସ, ରକ୍ତ ଖାଇବେ। ସେମାନେ ତା'ଙ୍କଠାରୁ ମୂଲ୍ୟବାନ ଜିନିଷ ଲୁଟିନେବେ।" ଜଣେ ଫଳବିକାଳି କହିଲା।

"ଆଉ ପିଶାଚମାନେ ଯେ କୌଣସି ରୂପ ଧାରଣ କରି ପାରିବେ ଓ ତୁମେ କଳ୍ପନା ମଧ୍ୟ କରି ପାରିବ ନାହିଁ ଯେ, ସେମାନେ ପିଶାଚ।" ଆଉ ଜଣେ ଦୋକାନୀ କହିଲା।



ବଳବାନ୍ ଆସ୍ଫାଳନ କରି କହିଲା, "ଓଃ ! ଏହା ଏକ ବକ୍‌ବାସ ! ମୁଁ ସେହି ଉପତ୍ୟକାକୁ ଯିବି ଓ ପିଶାଚ ସହିତ କୁସ୍ତି କରିବି। ମୁଁ ଫେରି ଆସି ତୁମକୁ ପିଶାଚମାନଙ୍କ ସମ୍ପର୍କରେ ପୁରା ବିବରଣୀ ଦେବି।"

ତା'ପରଦିନ ବଳବାନ ଉପତ୍ୟକା ଅଭିମୁଖେ ବାହାରିଲା। ତା'ର ପଡୋଶୀ ଭାବେ ରହୁଥିବା ଜଣେ ବୃଦ୍ଧା ତା' ପାଖକୁ ଆସି କହିଲା: "ପୁଅ ଭଗବାନ ତତେ ରକ୍ଷା କରିବେ। ଏହି ଅଣ୍ଡା ଆଉ ଲୁଣ ପାଖରେ ରଖିବ। ଏହା ତୁମକୁ ତୁମ ଅସୁବିଧା ସମୟରେ ପ୍ରଚୁର ସାହାଯ୍ୟ କରିବ।"

ସେ ଉପତ୍ୟକା ପାଖରେ ପହଞ୍ଚିଲା ମାତ୍ରେ ଶୁଣିଲା କେହି ଜଣେ ତା'ର ନାଁ ଧରି ଡାକୁଛି:

ଆରେ ବଳବାନ୍, ତତେ ଏଠାରେ ଦେଖି ବେଶ୍ ଖୁସୀ ଲାଗୁଛି । ମୁଁ ତୁମର ପ୍ରିୟ ସାଥୀ ଗବର । ଏଠାକୁ ଆସ, ଅନେକ କଥା ଅଛି ।''

ବଳବାନ ଜାଣିଲା ସେଠି ରହୁଥିବା ଏକ ପିଶାଚ ତା ସହିତ କଥା ହେବା ପାଇଁ ତାଁକୁ ଡାକୁଚି । ସେ ସାଙ୍ଗେ ସାଙ୍ଗେ ପ୍ରତିରକ୍ଷା ପାଇଁ ପ୍ରସ୍ତୁତ ହେଲା ।'' ସେ କହିଲା: ''ତୁମେ ଏବେ କେଉଁଠାରେ ଗବର ? ମୁଁ ତୁମକୁ ଦେଖି ପାରୁନାହିଁ ।''

ପିଶାଚ ବଳବାନର କଥା ଶୁଣି ଗବର ରୂପରେ ହଠାତ୍ ଆସି ପହଞ୍ଚିଲା ।

ବଳବାନ୍ କହିଲା: ''ଆରେ ପିଶାଚ ! ଶେଷରେ ତୁ ଆସିଲୁ । ତେବେ ତୁ ଗବର ରୂପରେ ଆସିଛୁ ?'' ଜୀବନରେ ପ୍ରଥମଥର ପାଇଁ ପିଶାଚ ଜାଣିଲା କେହି ଗୋଟେ ମଣିଷ ତାକୁ ଆହ୍ୱାନ ଦେଇଛି । ''ତୁମେ ଏଠାରେ କାହିଁକି ଅଛ-ମୁଁ କିପରି ବା ଜାଣିବି ?''- ପିଶାଚ କହିଲା ।

''ଆରେ ବୋକା, ବୁଦ୍ଧୁ ପିଶାଚ, ମୁଁ ତତେ ଦେଖି ଆଶ୍ଚର୍ଯ୍ୟ ହେଉଛି । ତୁ ଗୋଟେ ମଣିଷକୁ ଆଦୌ ଚିହ୍ନୁନା । ମୁଁ ଜଣେ ମଲ୍ଲଯୋଦ୍ଧା । ମୁଁ ଅନେକ କୁମ୍ଭୀର ଯେଉଁମାନେ କି ଆମ ଗ୍ରାମରୁ ଗାଈ ଖାଇ ଦେଉଥିଲେ, ସେମାନଙ୍କୁ ମାରିଛି । ଆଉ ମୁଁ ମଣିଷ ଖିଆ ସିଂହ ମାନଙ୍କୁ 'ଭରତା' କରି ଖାଇଛି । ଏବେ ମୁଁ କେତେକ ପିଶାଚଙ୍କୁ ମାରି ଖାଇବି ।''

ପିଶାଚ ବଳବାନ ର ଗୋଡଠାରୁ ମୁଣ୍ଡ ପର୍ଯ୍ୟନ୍ତ ଦେଖିଲା ଓ କହିଲା: ''କିନ୍ତୁ ତୁମେ ତ ବଳବାନ ପରି ମନେ ହେଉନାହଁ ।''

ବଳବାନ କହିଲା: ''ଯାହା ମଣିଷ ଦିଶେ, ଠିକ୍ ସେୟା ନୁହେଁ । ତୁମେ ନିଜକୁ ଦେଖୁନା । ତୁମେ ତ ଗବର ପରି ଦିଶୁଚ, କିନ୍ତୁ ତୁମେ କ'ଣ ଗବର କି ?''- ସେ କହିଲା ।

ଜମିରୁ ଖଣ୍ଡେ ପଥର ଉଠାଇ ସେ ପିଶାଚ

# ନାଳନ୍ଦା ବିଶ୍ୱବିଦ୍ୟାଳୟ

ଗୁପ୍ତ ବଂଶର ସମ୍ରାଟ ମାନଙ୍କ ଦ୍ୱାରା ଖ୍ରୀଷ୍ଟପୂର୍ବ ୫ମ ଶତାବ୍ଦୀରେ ନାଳନ୍ଦା ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହୋଇଥିଲା । ଏହା ସେ କାଳରେ ଏକ ଗୁରୁତ୍ୱପୂର୍ଣ୍ଣ ପୀଠ ଭାବେ ବିବେଚିତ ହେଉଥିଲା । ଏଠାରେ ପଢ଼ାଯାଉଥିବା ବିଷୟ ଗୁଡିକ ମଧ୍ୟରେ ବୌଦ୍ଧଧର୍ମ ସମ୍ପର୍କରେ ଶିକ୍ଷା ପ୍ରଦାନ କରାଯାଉଥିଲା । ଯାହା ମଧ୍ୟରେ ମହାଜନ ଓ ହୀନଜନ ପରି ଦୁଇଟି ଭିନ୍ନ ମାର୍ଗାବଲମ୍ବୀର ପାଠ୍ୟକ୍ରମ ଥିଲା । ବେଦ, ହେତୁ ବିଦ୍ୟା, ଶବ୍ଦ ବିଦ୍ୟା(ବ୍ୟାକରଣ) ଓ ଚିକିତ୍ସା ବିଦ୍ୟା(ଔଷଧ ସମ୍ପର୍କୀୟ) ପାଠମଧ ପଢ଼ାଯାଉଥିଲା ।



ବିଶ୍ୱବିଦ୍ୟାଳୟରେ ହଜାର ହଜାର ଛାତ୍ର ଓ ଶିକ୍ଷକ ବିଦ୍ୟାଚର୍ଚ୍ଚାକରୁ ଥିଲେ । ସେମାନଙ୍କ ମଧ୍ୟରେ ସବୁଠାରୁ ବିଖ୍ୟାତ ଛାତ୍ର ଥିଲେ ଚୀନ ପରିବ୍ରାଜକ ହୁଏନ୍‌ସାଂ ।

ଆତକୁ ବଢ଼ାଇ କହିଲା: ''ଏହା ଶୁଖିଲା ମନେ ହେଉଛି । ଏହାକୁ ଚିପୁଡି ଦିଅ । ଦେଖିବ, ଏଥିରୁ ତରଳ ଜଳ ନିର୍ଗତ ହେବ ।''

ପିଶାଚ ଗୋଟେ ପଥର ନେଲା ଓ ଚିପୁଡିଲା । କିନ୍ତୁ ପ୍ରକୃତରେ କିଛି ଘଟିଲା ନାହିଁ । ସେ କହିଲା: ''ଅସମ୍ଭବ !''

ଏଥର ବଳବାନ ସେହି ପଥରକୁ ବଦଳାଇ ଅଣ୍ଡାଟିଏ ପକେଟରୁ ଆଣିଲା । ଏହା ପିଶାଚ ଦେଖି ପାରିଲା ନାହିଁ । ସେ କହିଲା: ''ଏ ଆଡକୁ ଦେଖ, ମୁଁ ଏହି ପଥରକୁ ଚିପୁଡି ଦେବି । ସେଥିରୁ ନିଗିଡ ଆସିବ ପ୍ରଚୁର ପାଣି ।''

ଏଥର ସେ ଅଣ୍ଡାଟିକୁ ତାର ପାପୁଲିରେ ଚାପି ଧରିଲା । ବଳବାନ୍‌ର ପାପୁଲି ଭିତର ଦେଇ ବୋହି ଆସିଲା ଅଣ୍ଡାର କେଶର ଓ ଧଳାଧଳା ଅଂଶ ।

ଏଥର ପିଶାଚ ଦେଖିଲା ସତରେ ପାଣି ବୋହି ଯାଉଛି । ସେ ଖୁସୀ ହେଲା । ବଳବାନ ଏ ସବୁ ତା ପକେଟରୁ ବହାର କଲା ବେଳେ ପିଶାଚ କିଛି ଦେଖିପାରିଲା ନାହିଁ ।

ଏଥର ବଳବାନ ଏକ ଶାମୁକା ଜମିରୁ ଗୋଟାଇ ନେଲା । ''ତୁମେ ଏହାକୁ ହାତରେ ଦଳି ଲୁଣ କରିଦେଇ ପାରିବ ?''- ସେ ପଚାରିଲା ।

'ଲୁଣ'- ପିଶାଚ ପଚାରିଲା ।

''କି ଲଜ୍ଜାର କଥା । ମୁଁ ତୁମକୁ ମୋର ସମକକ୍ଷ ବୋଲି ଭାବି ଦ୍ୱନ୍ଦ ଯୁଦ୍ଧରେ ମାତିବା ପାଇଁ ଚାହିଁଲି ।''- ଏତିକି କହି ବଳବାନ ତାର ଦୁଇଟି ହାତରେ ଶାମୁକା କୁ ଦଳିଦେଲା । ଏ ସମୟରେ ସେ ସତର୍କତା ର ସହିତ ଶାମୁକାଟିକୁ ପକେଟ ଭିତରେ ରଖିଦେଲା । ତା'ପରେ ପକେଟରୁ ଲୁଚେଇ ଆଣିଥିବା ଲୁଣକୁ ପିଶାଚ କୁ ଦେଖାଇଲା । ''ଏଥର ଏହାକୁ ଚାଖି ଦେଖତ ?- ଲୁଣ ନୁହେଁ !''- ସେ କହିଲା । ଏଥର ପିଶାଚ ଲୁଣକୁ ଚାଖିଲା ଓ କହିଲା:



'ଆରେ, ଏ ତ କିଛି ଅଳ୍ପ ମଣିଷ ନୁହେଁ !'

ବଳବାନ ଏଥର କହିଲା: ''ମୁଁ ତୁମକୁ ଏଥର ମୋ ଗ୍ରାମକୁ ନେଇ ଯିବାକୁ ଚାହେଁ । ଆମର ଗ୍ରାମବାସୀ ଗଣ ପିଶାଚ ଦର୍ଶନ କରିନାହାନ୍ତି । ତୁମେ ମୋ ସହିତ କାଲି ମୋ ଗ୍ରାମକୁ ଆସି ପାରିବ ?''

ପିଶାଚ ଭାବିଲା: ''ମୁଁ ଏ ଲୋକକୁ ମୋ ଘରକୁ ଡାକିନେବି ଓ ସେ ଶୋଇଥିବା ବେଳେ ତା ମୁଣ୍ଡକୁ ପଥରରେ ଛେଚି ଛେଚି ମାରିଦେବି ।'' ସେ ବଳବାନକୁ କହିଲା: ''ମୁଁ ଜଣେ ନୁହେଁ, ମୋ ସହିତ ଅନେକ ପିଶାଚ ତୁମ ସହିତ ତୁମ ଗ୍ରାମକୁ ଆସିବେ । ତୁମେ ଆଜି ରାତିକ ମୋର ଗୁମ୍ଫାରେ ରୁହ ଓ କାଲି ସକାଳୁ ତୁମର ଯାତ୍ରା ଆରମ୍ଭ କରିବ । ଗଲାବେଳେ ସାଙ୍ଗରେ କିଛି ପିଶାଚ ନେଇ ଯିବ । ମୋର ଆତିଥ୍ୟ ସ୍ୱୀକାର କର ।'' ବଳବାନ ତାର କଥା ମାନିଲା । ''ତେବେ ମୋ ସହିତ ଖେଳିବାକୁ ଚେଷ୍ଟା କରିବ ନାହିଁ । ମନେ

# ହସ୍ତଶିଳ୍ପ

ବିହାରର ହସ୍ତଶିଳ୍ପ ପୃଥିବୀ ବିଖ୍ୟାତ । ହସ୍ତଶିଳ୍ପ ପାଇଁ ପଥର, କାଠ, ଚମଡା, କପଡା, ଧାତୁ ଓ କାଚ ପ୍ରଭୃତି ବ୍ୟବହୃତ ହୁଏ ।

ବିହାରର ସବୁଠାରୁ ବିଖ୍ୟାତ ଚିତ୍ରକଳା- ମଧୁବାଣୀ । ଏହି କଳାଟି ରାଜ୍ୟର ମହିଳା ମାନଙ୍କ ଦ୍ୱାରା ପ୍ରସ୍ତୁତ କରାଯାଏ । ଏହି ଚିତ୍ରାବଳୀ କାନ୍ଥରେ ଓ ପଲ୍ଲୀ ଘରର କାନ୍ଥରେ ଚିତ୍ରିତ କରାଯାଏ । ଏହି ଚିତ୍ର ର ରଙ୍ଗ ବୃକ୍ଷ ଓ ପଥରରୁ ପ୍ରସ୍ତୁତ କରାଯାଏ ।



ରଖ ଯିଏ ଶାମୁକାରୁ ଲୁଣ ପ୍ରସ୍ତୁତ କରି ପାରେ, ସେ ତୁମର ସବୁ ବଦମାସୀ ଦେଖିପାରିବ ।''

ଏଥର ପିଶାଚ ଭଲ ବ୍ୟବହାର କରିବ ବୋଲି ପ୍ରତିଜ୍ଞା କରି ବଳବାନକୁ ତା ଘରକୁ ନେଇଗଲା । ଘର କହିଲେ ତାହା ଏକ ଗୁମ୍ଫା, ଯେଉଁଥିରେ ଭରି ରହିଥିଲା, ଧନରତ୍ନ, ହୀରାନୀଳା-ଯାହାସବୁ ପିଶାଚଯାତ୍ରୀ ମାନଙ୍କୁ ହତ୍ୟା କରି ସଂଗ୍ରହ କରିଥିଲା । ବଳବାନ ଦେଖିଲା ଗୁମ୍ଫା ଭିତରେ ପଡିଛି ବହୁ ଲୋକଙ୍କର କଙ୍କାଳ । ବଳବାନ ଜାଣିପାରିଲା ପିଶାଚ ମଣିଷଙ୍କର ମାଂସ ସବୁ ଖାଇ ସାରିବା ପରେ ଏପରି ଉଚ୍ଛିଷ୍ଟ ତ୍ୟାଗ କରିଛି ।

ଏଥର ପିଶାଚ ବଳବାନକୁ ଭଲ ବ୍ୟବହାର କଲା । ବଳବାନ କହିଲା: ''ମୁଁ ତ ସାରାଦିନରେ ଥରେ ମାତ୍ର ଖାଇଥାଏ । ତାହା ପୁଣି ମୁଁ କୌଣସି ଜାଗାକୁ ଯିବାପୂର୍ବରୁ । କିନ୍ତୁ ତୁମକୁ ଖୁସୀ କରିବା ପାଇଁ ମୁଁ କିଛି ଭାତ ହିଁ ଖାଇବି ।''

ପିଶାଚ କହିଲା: ''ମୁଁ ତେବେ ତୁମ ପାଇଁ ଶୁଖିଲା କାଠ ଯୋଗାଡ କରିଆଣେ । ତୁମେ ପାଖ ଝରଣାରୁ ବାଲଟିରେ ପାଣି ନେଇ ଚାଲିଆସ ।''

ବଳବାନ ବାଲଟି ଟିକୁ ନେବା ପାଇଁ ଚେଷ୍ଟା କରି ପାରିଲା ନାହିଁ । ଏକଥା ପିଶାଚ ଦେଖିଲା, ଯେତେବେଳେ ସେ ଶୁଖିଲା କାଠ ନେଇ ପହଞ୍ଚିଲା । ବରଂ ସେ ଝରଣାଠାରୁ ଏକ ବଡ ସୁଡଙ୍ଗ ରୋଷେଇଘର ପର୍ଯ୍ୟନ୍ତ ଆବିଷ୍କାର କରି ସାରିଛି । ''ଆରେ ତମେ କରୁଛ କ'ଣ !''- ପିଶାଚ ପାଟିକଲା । ମୁଁ ତ ତୁମକୁ ବାଲଟିରେ ପାଣି ଆଣିବାକୁ କହିଲି ?''

''ତୁମେ ଜାଣିଛ, ମୁଁ ବାରଟି ବାଲଟି ପୂର୍ଣ୍ଣ କରି ପାଣି ଆଣି ପାରିବି । କିନ୍ତୁ ମୁଁ ତୁମର ଆତିଥ୍ୟର ସ୍ମାରକୀ ସ୍ୱରୂପ କିଛି ସ୍ମୃତି ଛାଡିଯିବି ? ମୁଁ ତେଣୁ ଏ' ସୁଡଙ୍ଗ ଖୋଳି ବାହାର କରିଛି ।''- ବଳବାନ କହିଲା ।

ଦ୍ୱି-ପ୍ରହର ଖାଦ୍ୟ ଖାଇ ସାରିବା ପରେ ସେମାନେ ବିଛଣାକୁ ଗଲେ । ପିଶାଚ ସଙ୍ଗେ ସଙ୍ଗେ

ଶୋଇପଡିଲା । ବଳବାନ ଚଦର ଭିତରେ ଗୋଟିଏ ବଡ ତକିଆ ରଖି, କବାଟ କୋଣରେ ଲୁଚିଗଲା । ସେ ଆଶା କରୁଥାଏ ଯେ କିଛି ଗୋଟେ ଅଘଟଣ ଘଟିବାକୁ ଯାଉଛି ।

ରାତିଟିକେ ବେଶୀ ହେବାପରେ ପିଶାଚ ଉଠିପଡି ସିଧା ସଳକ ତକିଆକୁ ଏକ ବିରାଟ ବିଧା ଥୋଇଲା । ସେ ଦେଖିଲା କିଛି ଚିତ୍କାର ଆସୁନାହିଁ । ବଳବାନ ମରିଗଲା ଜାଣି ନପାରି ସେ ଆହୁରି ଛଅଥର ବିଧା ମାରିଲା ଓ ତା'ପରେ ସେ ବିଛଣାକୁ ଫେରିଆସିଲା ।

ହଠାତ୍ ବଳବାନ କବାଟ କଣରୁ ପଦାକୁ ବାହାରି ପଡି କହିଲା: ''ବନ୍ଧୁ, ମନେହୁଏ ତୁମ ଘରେ ପର୍ଯ୍ୟାପ୍ତ ଓଡଶଙ୍କ ରାଜୁତି । ଏବେ ଏବେ ମତେ ସାତଟି କାମୁଡି ସାରିଲେଣି !''

ପିଶାଚ ଚମକି ପଡିଲା । ସେ ଭାବିଲା ବଳବାନ ମରିଯାଇଛି । ତା'ର ପିଶାଚ ବୋଧେ ବାହାରିପଡି

## ପର୍ଯ୍ୟଟନ ସ୍ଥଳୀ

ବୁଦ୍ଧଗୟା- ଏଠାରେ ବୁଦ୍ଧଦେବ ବୁଦ୍ଧତ୍ୱ ପ୍ରାପ୍ତ ହୋଇଥିଲେ । ଯେଉଁ ବୃକ୍ଷ ତଳେ ସେ ତପସ୍ୟା କରୁଥିଲେ ତାହା ବୋଧି ବୃକ୍ଷ ଭାବେ ବିଖ୍ୟାତ । 'ବୁଦ୍ଧଗୟା' ଓ 'ମଉଜିୟମ୍' ବୁଲି ଦେଖିବାପାଇଁ ଏହା ପ୍ରକୃତ ସ୍ଥାନ ।

ଅନ୍ୟଏକ ପର୍ଯ୍ୟଟନ କ୍ଷେତ୍ର ହେଉଛି ରାଜଗିରି । ଏହି ସୁନ୍ଦର ପ୍ରାକୃତିକ ପରିବେଶଟି ପାହାଡ ଓ ଜଙ୍ଗଲ ପରିବେଷ୍ଟିତ ଅଟେ । ଏଠାରେ ବୁଦ୍ଧଦେବ ତାଙ୍କର ନିର୍ବାଣ ପ୍ରାପ୍ତିର ପାଞ୍ଚବର୍ଷ କଟାଇଥିଲେ । ଏହି ସ୍ଥାନଟି ଜୈନ୍ୟ ଧର୍ମାବଲମ୍ବୀ ମାନଙ୍କର ଆକର୍ଷଣ ଓ ଏଠାରେ ୨୪ ଜଣ ତୀର୍ଥଙ୍କର ନିସ୍ତାର ସହ ନିର୍ବାଣ ପାଳନ କରିଥିଲେ ।



ତା ସହିତ ଗପ କରୁଛି ! ଏବେ ଏ ଲୋକ ତା'ର ମାଡକୁ ଓଡଶ କାମୁଡାବୋଲି କହୁଛି ! 'ମଣିଷ ଯଦି ଏପରି ଶକ୍ତିଶାଳୀ ହେଲାଣି, ତେବେ କ'ଣ ହେବ ଆମର ଦଶା !'- ଏକଥା ଭାବି ପିଶାଚ ଜୋରରେ ବାହାରକୁ ଦୌଡିବାକୁ ଲାଗିଲା ।

ବଳବାନ ରାମପୁର ରୁ କିଛି ଘୋଡାଆଣି ଧନ ସମ୍ପତ୍ତି ସହ ଗାଁ କୁ ଫେରି ଆସିଲା । ସେ ଉକ୍ତ ବୃଦ୍ଧାକୁ ଧନ, ସମ୍ପତ୍ତି ରୁ କିଛି ଦେଲା, ଯେ କି ତାକୁ ଅଣ୍ଡା ଓ ଲୁଣ ଦେଇଥିଲା ।

ଏହାପରେ ବଳବାନ ପିଶାଚର ଅବସ୍ଥା ସମ୍ପର୍କରେ ବର୍ଣ୍ଣନା କରିବା ଆରମ୍ଭ କଲା । କିନ୍ତୁ ଆଉ ତାକୁ ନେଇ ଗର୍ବ କଲା ନାହିଁ । ସେ ଭଗବାନଙ୍କ କୃପାକୁ କୃତଜ୍ଞତା ଜଣାଇଲା ।

# ସମ୍ବାଦ ବିଚିତ୍ରା

## ଦର୍ପଣ ଦ୍ୱାରା ସମାଧାନ

ଲକ୍ଷ୍ନୌ ଚିଡିଆଖାନାର କର୍ତ୍ତୃପକ୍ଷ ଖୁବ୍ ଚିନ୍ତିତ ଥିଲେ । ସନ୍ନି ଓ ଚୀନା ମୁହଁ ଶୁଖାଉଥିଲେ ଓ ଦର୍ଶକମାନଙ୍କୁ ଦେଖି ଉଲ୍ଲସିତ ହେଉ ନ ଥିଲେ । କାରଣ, ଏଇ ଦୁଇଟି ବିରାଟ ସିମ୍ପାଞ୍ଜି ସେମାନଙ୍କ କୋଠରୀରେ ଏକାକୀ ରହୁଥିଲେ । ସେମାନଙ୍କର ଦେଖାରଖା କରୁଥିବା କର୍ମଚାରୀମାନଙ୍କ ମୁଣ୍ଡକୁ ଗୋଟିଏ ବୁଦ୍ଧି ଜୁଟିଲା । ପରୀକ୍ଷାମୂଳକ ଭାବେ ସେମାନେ ସିଦ୍ଧାନ୍ତ ନେଲେ ଯେ, ଦ୍ୱାର ପାଖରେ ବଡ ଆକାରର ଦର୍ପଣ ଲଗାଇ ଦିଆଯିବ । ସିମ୍ପାଞ୍ଜିମାନେ ଉଠିବା ପରେ ସେମାନଙ୍କର ଖୁବ୍ ପାଖରେ ଅପର ସାଥୀକୁ ପାଇ ପାରିଲେ । ସେମାନେ ନିଜ ମୁଣ୍ଡ କୁଣ୍ଡାଇଲେ ଦେଖି ପାରିଲେ ଯେ ଆର ଜଣକ ମଧ୍ୟ ସେପରି ମୁଣ୍ଡ କୁଣ୍ଡାଉଛି । ଜଣେ ବାମ ଗୋଡ ଉଠାଇବା ବେଳକୁ ଆଉ ଜଣେ ଡାହାଣ ଗୋଡ ଉଠାଉଛି । ସେମାନେ ଯେତେବେଳେ ଗାଲ ଲଗାଇ ହସିଲେ, ଆଉ ଜଣେ ସେପରି କରୁଛି ! ଏହା ପ୍ରକୃତରେ ସନ୍ନି ଓ ଚୀନା ପାଇଁ ଖୁବ୍ ମଜାଳିଆ କଥା ଥିଲା । ଆଉ ସେମାନେ ମୁହଁ ଶୁଖାଇ ନ ଥିଲେ ଓ ଦର୍ଶକମାନେ ଖେଳକୁ ମନଭରି ଉପଭୋଗ କରୁଥିଲେ ।



## ପାଳିତ ନା' ବିଷାକ୍ତ ?



ନିଶ୍ଚୟ, ବ୍ରିଟିଶ୍ କଲମ୍ବିଆର କେଲୋଆଁର କୁପସ୍ ପରିବାର ପାଇଁ ସେମାନେ ପାଳିତ ପ୍ରାଣୀ କିନ୍ତୁ ଶିଶୁମଙ୍ଗଳ ବିଭାଗ ପାଇଁ ତାହା ଥିଲା ବିପଦଜନକ ବିଷଧର ଜନ୍ତୁ । ପାଞ୍ଚ ମିଟର (୧୬.୫ଫୁଟ) ଲମ୍ବର ଏକ ଅଜଗର, ପାଞ୍ଚ ବର୍ଷ ଧରି ସେମାନଙ୍କ ସହିତ ବାସ କରୁଥିଲା । ସେମାନଙ୍କର ପରିବାରରେ ନଅଟି ଶିଶୁ ଥିଲେ, ସବା ସାନଟିର ବୟସ ଥିଲା ମାତ୍ର ଦୁଇବର୍ଷ । କର୍ତ୍ତୃପକ୍ଷ ଶିଶୁମାନଙ୍କର ନିରାପତ୍ତା ପାଇଁ ଚିନ୍ତିତ ଥିଲେ ତେଣୁ ସେମାନେ ଚାହୁଁଥିଲେ ପିଲାମାନେ କିମ୍ବା ସାପ ଯିଏ ବି ହେଲେ ଘରୁ ବାହାରିଯାଉ । କିନ୍ତୁ କୁପସ୍ ପରିବାର ଅଜଗରକୁ ବନ୍ଧୁ ଭାବେ ଗ୍ରହଣ କରି ନେଇଥିଲେ । ଅନେକ ସମୟରେ ସ୍କୁଲ ପିଲାମାନେ ତା'ଙ୍କ ଘରକୁ ଯାଇ ଅଜଗର ସହିତ ନିର୍ଭୟରେ ମିଳାମିଶା କରିବାକୁ ସାହସ କରୁଥିଲେ ।



# ବିଘ୍ନେଶ୍ୱର

ମୁହୂର୍ତ୍ତକ ଭିତରେ ଜନନୀ ପାର୍ବତୀ ନିଜର ସମସ୍ତ ଦୁଃଖ ପାଶୋରି ଦେଲେ ଏବଂ ଶିଶୁ ପୁତ୍ର ଗଣପତିଙ୍କୁ କୋଳକୁ ନେଲେ । ଶିବ ଦୁଇ କର ପ୍ରସାରିତ କରି ଗଣପତିଙ୍କୁ ତାଙ୍କ ପାଖକୁ ଆସିବାକୁ ଇଙ୍ଗିତ ଦିଅନ୍ତେ ସେ ଦିବ୍ୟ ଶିଶୁ ଯେପରି ମଧୁରଗତିରେ ତାଙ୍କ ଆଡ଼କୁ ଚାଲିଲେ, ତାହା ଦେଖି ସମବେତ ସମସ୍ତେ ମୁଗ୍ଧ ହେଲେ ।

''ବିଘ୍ନେଶ୍ୱର ! ହେ ଚିରଞ୍ଜିବୀ ! ତମକୁ ପୁତ୍ର ରୂପରେ ପାଇ ଆମେ ଧନ୍ୟ ହେଲୁ ।'' ଏହା କହି ଶିବ ଗଣପତିଙ୍କୁ ସ୍ନେହରେ ଚୁମା ଦେଲେ । ଗଣପତି ସଙ୍ଗେ ସଙ୍ଗେ ତାଙ୍କ କୋଳରୁ ଓହ୍ଲାଇ ପଡ଼ି କହିଲେ, ''ପିତା ! ଆପଣ ଇଏ କ'ଣ କହୁଛନ୍ତି ? ମୁଁ ଆପଣଙ୍କ ପୁତ୍ର ହୋଇ ପାରିଥିବାରୁ ନିଜକୁ ଧନ୍ୟ ମଣୁଛି ।''

ଏହା କହି ଗଣପତି ନିଜ କୋମଳ ଶୁଣ୍ଢରେ ଶିବ ପାର୍ବତୀଙ୍କ ଚରଣ ସ୍ପର୍ଶ କରି ସେ ଶୁଣ୍ଢ ନିଜ ଆଖିରେ ଓ କପାଳରେ ଛୁଇଁଲେ । ତା'ପରେ ସେ ବିଷ୍ଣୁଙ୍କୁ ପ୍ରଣାମ କଲେ ।

ବିଷ୍ଣୁ ଅତ୍ୟନ୍ତ ସ୍ନେହଭରେ ଗଣପତିଙ୍କୁ ଭିଡ଼ି ନେଲେ ଓ ଆଶୀର୍ବାଦ ଦେଲେ ।

ଏହାପରେ ବିନାୟକ ବ୍ରହ୍ମାଙ୍କୁ ପ୍ରଣାମ କଲେ । ବ୍ରହ୍ମା ତାଙ୍କୁ ଆଶୀର୍ବାଦ ଦେଇ କହିଲେ, ''ହେ ଗଣପତି, ତୁମେ ହେବ ସର୍ବଜନଙ୍କର ପ୍ରଥମ ବନ୍ଦନୀୟ ।''

ବିଘ୍ନେଶ୍ୱର ବ୍ରହ୍ମାଙ୍କ ପାଖରୁ ଯାଇ ଲକ୍ଷ୍ମୀ ଓ ସରସ୍ୱତୀଙ୍କୁ ପ୍ରଣାମ କଲେ । ଦୁଇ ଦେବୀ ଗଣପତିଙ୍କୁ ନିଜ ନିଜ କୋଳକୁ ନେଲେ ।

ପାର୍ବତୀଙ୍କ ଆଡ଼କୁ ଦୃଷ୍ଟିପାତ କରି ଦୁଇ ଦେବୀ କହିଲେ, ''ବିନାୟକଙ୍କର ବିବାହ କେବେ ହେବ ? ବିଦ୍ୟାବତୀ ନାମକ ବୁଦ୍ଧି ଓ ଜୟଲକ୍ଷ୍ମୀ ନାମକ ସିଦ୍ଧି ବିନାୟକଙ୍କର ଯୋଗ୍ୟ ପତ୍ନୀ ହେବେ । ବିନାୟକଙ୍କ ବିବାହ-ବୈଭବ ଦେଖିବାକୁ ଆମେ



ଆଗ୍ରହରେ ଅପେକ୍ଷା କଲୁ ।''

ଦେବୀ ଲକ୍ଷ୍ମୀ କହିଲେ, ''ଯିଏ ବିଘ୍ନେଶ୍ୱର ଉପରେ ବିଶ୍ୱାସ ରଖିବ, ମୁଁ ସର୍ବଦା ତା'ର ସହାୟତା କରୁଥିବି । ସିଦ୍ଧି-ସ୍ୱରୂପିଣୀ ଯେଉଁ ଜୟଲକ୍ଷ୍ମୀଙ୍କୁ ବିନାୟକ ବିବାହ କରିବେ, ସେ ମୋହରି ବିଭୂତି ବିଶେଷ ।''

ଦେବୀ ସରସ୍ୱତୀ କହିଲେ, ''ବିଘ୍ନେଶ୍ୱର ହେଲେ ଜ୍ଞାନ-ପ୍ରଦାୟକ ତଥା ବିଜ୍ଞାନ-ପ୍ରଦାତା । ବର୍ଣ୍ଣମାଳା ଶିଖିବା ପୂର୍ବରୁ ଶିଶୁକୁ ବିଘ୍ନେଶ୍ୱରଙ୍କ ପୂଜା କରାଇ ପ୍ରଥମେ ଓଁ ନମଃ ବୋଲି ଲେଖାଇବାକୁ ହେବ । ବୁଦ୍ଧି-ରୂପିଣୀ ଯେଉଁ ବିଦ୍ୟାବତୀ ବିନାୟକଙ୍କର ପତ୍ନୀ ହେବେ, ସେ ମୋହର ଅଂଶ-ସମ୍ଭୂତା ।''

ବିଘ୍ନେଶ୍ୱର କିଛି ବୁଝି ନ ପାରିଲା ଭଳି ଦୃଷ୍ଟିରେ ସମସ୍ତଙ୍କ ଆଡ଼କୁ ଅନାଇଲେ ଓ ଦେବଦେବୀମାନଙ୍କ ଉପରେ ଦୃଷ୍ଟି ନିବଦ୍ଧ କରି କହିଲେ, ''ଇଏ କି ପ୍ରକାର କଥା ? ବିବାହ କଲେ ଲୋକେ ହଇରାଣ ହରକତ ହୁଅନ୍ତି ବୋଲି କିଏ ନ ଜାଣେ ? ତାହା ସତ୍ତ୍ୱେ ଏମାନେ ମୋତେ ବିବାହ ଦେବାପାଇଁ ଏଡ଼େ ବ୍ୟଗ୍ର କାହିଁକି ?''

ବିଷ୍ଣୁ ହସି କହିଲେ, ''ହେ ଅବୋଧ ଶିଶୁ ! ତମକୁ କଷ୍ଟ ଦେବା କାହାରି ଉଦ୍ଦେଶ୍ୟ ନୁହେଁ । ଆକାଶରେ ଚନ୍ଦ୍ର ଚତୁର୍ଦ୍ଦିଗରେ ଯେପରି ନକ୍ଷତ୍ରମାଳା ଶୋଭା ପାଉଥାନ୍ତି, ସେହିପରି ତମକୁ ବେଢ଼ି ରହିବେ ବିଶେଷ ଗୁଣବତୀ ପତ୍ନୀବର୍ଗ । ସେମାନେ ତମରି ଗୋଟିଏ ଗୋଟିଏ ଗୁଣର ପ୍ରତିନିଧିତ୍ୱ କରିବେ । ତେଣୁ ତମପାଇଁ ଆମେ ଯେପରି ବ୍ୟବସ୍ଥା କରୁଛୁ, ସେଥିରେ ତମର ବିଚଳିତ ହେବାର କୌଣସି କାରଣ ନାହିଁ ।''

''ମୁଁ ଜାଣେ, କୃଷ୍ଣାବତାର ଅବସରରେ ଅନେକ ମୁନି ଋଷି ତମର ସାନ୍ନିଧ ଲାଭ ସକାଶେ ଗୋପନାରୀ ହୋଇ ଜନ୍ମ ଗ୍ରହଣ କରିବେ !'' ଗଣପତି କହିଲେ ।

ବିଷ୍ଣୁ ମୃଦୁ ହାସ୍ୟ ସହକାରେ କହିଲେ, ''ତମକୁ କିଛି ଅଜଣା ଥାଇ ନ ପାରେ । ଦଶ ବଧୂ ସହ ତୁମର ବିବାହ ସମ୍ପନ୍ନ କରିବା ଆମର ଉଦ୍ଦେଶ୍ୟ ।''

''ପ୍ରବାଦ ରହି ଆସିଛି: ବିଘ୍ନେଶ୍ୱରଙ୍କ ବିବାହ ପାଇଁ ସହସ୍ର ବିଘ୍ନ ମୋତେହିଁ ସର୍ଜନା କରି ପ୍ରବାଦର ସତ୍ୟତା ପ୍ରତିପାଦିତ କରିବାକୁ ପଡ଼ିବ ।'' ବିଘ୍ନେଶ୍ୱର କହିଲେ ।

''ସହସ୍ର କାହିଁକି, କୋଟିଏ ବିଘ୍ନ ଉପୁଜିଲେ ମଧ୍ୟ ବିଘ୍ନେଶ୍ୱରଙ୍କ ବିବାହ ବନ୍ଦ ହେବାର ନୁହେଁ-'' କହିଲେ ବ୍ରହ୍ମା । ଦେବଦେବଗଣ ଆନନ୍ଦରେ ଏ ବିବୃତିକୁ ସମର୍ଥନ କଲେ ।

ନାରଦ ଆଗକୁ ବାହାରି ଆସି କହିଲେ, ''ହେ ବିଘ୍ନେଶ୍ୱର ! ଆପଣ ତ ମୋଠୁଁ ବଳି ବାଚାଳ ଦେଖୁଛି । ବିବାହ ଏଡ଼ାଇପାରିବା କ'ଣ ସହଜ କଥା ? ମୋତେ ଘର ସଂସାର କରିବାକୁ ଡର

ଲାଗିଲା ବୋଲି ବୈରାଗୀ ହୋଇ ବୁଲୁଛି । ହେ ଜ୍ଞାନେଶ୍ୱର ! ମୋ ପନ୍ଥା କିନ୍ତୁ ଆଦର୍ଶ ହୋଇ ନ ପାରେ । ଏ ବିଶ୍ୱ ସୃଷ୍ଟି ସ୍ଥିତି ଲୟର ନିୟମ ଅନୁସରଣ କରୁଛି । ବିନା ବିବାହରେ ଏ ନିୟମ ପାଳନ କରିବା ସମ୍ଭବପର ନୁହେଁ । ତେଣୁ ଆପଣ ବିବାହ କରି ନିଜ କର୍ତ୍ତବ୍ୟନିଷ୍ଠା ଦେଖାଇଦେବା ଉଚିତ । କ'ଣ କହୁଛନ୍ତି ?''

ବିଘ୍ନେଶ୍ୱର ହସି ପକାଇ କହିଲେ, ''ଆପଣ ସିନା ବିବାହ କରି ନାହାନ୍ତି ! କିନ୍ତୁ ବିବାହ ପଛରେ ଆପଣ ପାଗଳ ବୋଲି ମନେ ହୁଏ । ଯେତେ ଯେଉଁଠି ସ୍ୱୟମ୍ବର ଇତ୍ୟାଦିର ବ୍ୟବସ୍ଥା ହୁଏ, ଆପଣ ସେଠାରେ ପହଞ୍ଚି ଯାଇଥାନ୍ତି ।''

''ହେ ବିଘ୍ନେଶ୍ୱର ! ଆପଣ ତ୍ରିକାଳଦର୍ଶୀ ବୋଲି ମୁଁ ଜାଣେ । କଥା କହିବାରେ ମୋ ସ୍ଥାନ ଆପଣଙ୍କ ପରେ ବୋଲି ମାନୁଛି । ଆପଣଙ୍କ ହାତରେ ସମସ୍ତଙ୍କ ଜନ୍ମଜାତକ ସୁରକ୍ଷିତ ରହିଥାଏ । ଆପଣ ଯଦି ସେଥିରେ କିଛି ହସ୍ତକ୍ଷେପ କରିବେ, ତେବେ ମହା ମହା ଜ୍ୟୋତିଷଙ୍କର ମଧ ମୁଣ୍ଡ ବୁଲାଇଦେବ । ଛାଡ଼ନ୍ତୁ, ଆମ ଦୁଇଜଣଙ୍କ ଭିତରେ ତର୍କ ହେଲେ ଅନନ୍ତ କାଳ ବ୍ୟାପି ତାହା ଚାଲିଥିବ । ଆପଣ ପୂର୍ଣ୍ଣ ଜ୍ଞାନୀ । ମୋ ଭଳି ଅସମ୍ପୂର୍ଣ୍ଣ ଜ୍ଞାନ ଥିବା ବ୍ୟକ୍ତି ଆପଣଙ୍କ ସହ ଯୁକ୍ତି ତର୍କ କରିବା ଶୋଭା ପାଏ ନାହିଁ । ଆପଣ ସମସ୍ତ ମାୟାର ଅତୀତ । ପଦ୍ମ ପତ୍ର ଉପରେ ଥିବା ଜଳକଣା ପରି ଆପଣ କୌଣସିଥିରେ ଲିପ୍ତ ନୁହଁନ୍ତି । ତଥାପି ସିଦ୍ଧି ଦାତା ଭାବରେ ପ୍ରସିଦ୍ଧି ଲାଭ କରିବା ନିମନ୍ତେ ଆପଣଙ୍କୁ ସିଦ୍ଧି ମାନଙ୍କୁ ପତ୍ନୀ ରୂପେ ବରଣ କରିବାକୁ ହେବ । ସେ କାର୍ଯ୍ୟ ଯେତେ ସହଳ ହେଲେ ସେତେ ଭଲ । ମୁଁ ଶ୍ରୀରସ୍ତୁ, ଶୁଭମସ୍ତୁ ଇତ୍ୟାଦି କହି ଆପଣଙ୍କ ପ୍ରତି ମୋର ଶୁଭେଚ୍ଛା ଜ୍ଞାପନ କରୁଛି ।''- ନାରଦ କହିଲେ । ତା'ପରେ ସେ ନିଜର ମହତ୍ ବୀଣା



ଯୋଗେ କଲ୍ୟାଣୀ ରାଗରେ ଆଳାପ ଆରମ୍ଭ କଲେ ।

ନାରଦ ସେଠାରୁ ଯାଇ ବଜ୍ରଦନ୍ତ ପାଖରେ ପହଞ୍ଚିଲେ । କିଛିଦିନି ତଳେ ବଜ୍ରଦନ୍ତକୁ ଶିଶୁ ଗଣପତି ତଳକୁ ଠେଲି ଦେଇଥିଲେ । ତଳେ ପଡ଼ିଯିବା ହେତୁ ବଜ୍ରଦନ୍ତ ଯେଉଁ ଆଘାତ ପାଇଥିଲା, ସେ ବେଦନାର ନିରସନ ହୋଇ ନଥିଲା । ତା' ପତ୍ନୀ ଧବଳା ବଜ୍ରଦନ୍ତର ସେବା କରୁଥିଲା । ନାରଦ ଆସିବାର ଦେଖି ଧବଳା ଭିତରକୁ ଚାଲିଗଲା । ନାରଦ ପୁଣି ବି ବିଭ୍ରାଟର ସୂତ୍ରପାତ କରିବେ କିଏ ଜାଣେ !

ମୁଷିକାସୁର ବଜ୍ରଦନ୍ତକୁ ନାରଦ କହିଲେ, ''ତମକୁ ଯେଉଁ ଗଣପତି ଅପମାନ ଦେଇଥିଲେ, ସେ ବର୍ତ୍ତମାନ ବିଘ୍ନେଶ୍ୱର ରୂପେ ଅବତୀର୍ଣ୍ଣ ।

''ସତେ ? ମୋର କର୍ତ୍ତବ୍ୟ କ'ଣ ବୋଲି ଆପଣ ଭାବୁଛନ୍ତି ?'' ବଜ୍ରଦନ୍ତ ପଚାରିଲା ।



କହିଲା । ବ୍ରହ୍ମା ବିଘ୍ନକୁ ଆବାହନ କଲେ । ସେ ଆସି ମୁଷିକାସୁର ଆଗରେ ଠିଆ ହେଲା । କିନ୍ତୁ ମୁଷିକାସୁର ତାକୁ ଦେଖି ପାରିଲା ନାହିଁ । ସେଇଠୁ ବ୍ରହ୍ମା ତାକୁ ସୂର୍ଯ୍ୟ ଦୃଷ୍ଟି ପ୍ରଦାନ କଲେ । ସେତେବେଳେ ଯାଇ ସେ ବିଘ୍ନଶ୍ବରକୁ ଦେଖିପାରିଲା । ସେ ଗୋଟିଏ କଳା କୃମିକୀଟ ଭଳି ଦିଶୁଥାଏ ।

ମୁଷିକାସୁର ଆଶ୍ଚର୍ଯ୍ୟ ହୋଇ କହିଲା, ''ହେ ଭଗବାନ ! ଇଏ କ'ଣ ? ଏଇ ସାମାନ୍ୟ ଜୀବକୁ ନେଇ ମୁଁ କ'ଣ କରି ପାରିବି ?''

ବ୍ରହ୍ମା ମନ୍ଦ ହସି କହିଲେ, ''ବିଘ୍ନର ବୀଜ ଏହିପରି ଅଦୃଶ୍ୟ ହୋଇ ରହିଥାଏ । ସାମାନ୍ୟ ବୀଜାଣୁ ଯେପରି ମାରାତ୍ମକ ରୋଗର ସୃଷ୍ଟି କରିପାରେ, ସେହିପରି ସାମାନ୍ୟ ଦିଶୁଥିବା ଏ ବିଘ୍ନର ବଳ କମ୍ ନୁହେଁ । ଇଏ ସର୍ବନାଶ କରିପାରେ । ତୁ ଏହାକୁ ଯେପରି ଭାବରେ ବ୍ୟବହାର କରିବାକୁ ଚାହୁଁ, ତାହା କରିପାରୁ !''

ମୁଷିକାସୁର ବିଘ୍ନକୁ କହିଲା, ''ତୁ ଗୋଟାଏ ଅସୁର ରୂପ ନେଇ ବିଘ୍ନେଶ୍ୱରଙ୍କୁ ଯାଇ ନାଶ କର ।''

ବିଘ୍ନ ସେ ନିର୍ଦ୍ଦେଶ ପାଇବା ମାତ୍ରେ ଭୟଙ୍କର ଗଜାସୁର ରୂପରେ ପରିଣତ ହେଲା । ପର୍ବତ ପ୍ରମାଣ କଳେବର ଧରି, ଖଣ୍ଡା ବୁଲାଇ ସେ ଆକାଶକୁ ଉଠିଗଲା ।

ତେଣେ କୈଳାଶରେ ବିଘ୍ନେଶ୍ୱର ପିତା ମାତାଙ୍କ ଆଦର ଯତ୍ନରେ କିଛିକାଳ ରହିବା ପରେ ସେମାନଙ୍କ ଅନୁମତି ନେଇ ବିଶ୍ୱକର୍ମା ନିର୍ମିତ ମହଲ ଦେଖିବାକୁ ବାହାରିଲେ । ତାଙ୍କ ଆଗରେ ଆବିର୍ଭୁତ ହେଲେ କାମଦେବ । ବିଘ୍ନେଶ୍ୱର ତାଙ୍କୁ ପଚାରିଲେ, ''ତମେ ତ ନିରାକାର । ଏଭଳି ଆକୃତି ଧରି ମୋତେ ଦେଖା ଦେବାର କାରଣ ? ଦେଖ ବାବୁ, ମୁଁ ସିଧା ସରଳ

''ଆରେ ବାବୁ, ବରଦେବାକୁ ଦେବ ବ୍ରହ୍ମା ତ ଅଛନ୍ତି ! ତୁ ତାଙ୍କ ଠାରୁ ବର ହାସଲ କରିନେ । ବଜ୍ର ଦେଇ ବଜ୍ରର ମୁକାବିଲା କରିବାକୁ ହୁଏ ! ଠିକ୍ ନୁହେଁ ?'' ଏତକ କହି ନାରଦ ସେଠାରୁ ଖସି ଚାଲିଗଲେ ।

ଧବଳା ବଜ୍ରଦନ୍ତକୁ ଅନେକ ବୁଝାଇଲା କି କୌଣସି ବିପଦ ବରଣ କରିବାକୁ ଯିବାର ଆବଶ୍ୟକତା ନାହିଁ । କିନ୍ତୁ ବଜ୍ରଦନ୍ତ ସେଥିରେ ପ୍ରଭାବିତ ନ ହୋଇ କହିଲା, ''ଦେଖ, ଅପମାନର ପ୍ରତିଶୋଧ ନ ନେଇ ମୁଁ ଶାନ୍ତିରେ ରହିବି କିପରି ?'' ଏହା କହି ସେ ବାହାରିଗଲା ଓ ଏକାଗ୍ର ତପସ୍ୟା କରି ବ୍ରହ୍ମାଙ୍କୁ ତୁଷ୍ଟ କଲା ।

''ପୁଣି କି ବର ଚାହୁଁଛ ?'' ବ୍ରହ୍ମା ପ୍ରଶ୍ନ କଲେ ।

''ବିଘ୍ନକୁ ମୋର ଅଜ୍ଞାବହ କରାଇ ଦିଅନ୍ତୁ । ମୁଁ ଯେପରି ବିଘ୍ନଶ୍ୱରକୁ ନାନା ରୂପରେ ଯେଣେ ଇଚ୍ଛା ତେଣେ ପଠାଇ ପାରିବି ।''- ମୁଷିକାସୁର



ବ୍ୟକ୍ତି । ମୋ ସହ ଲଗାଅ ନାହିଁ ।''

କାମଦେବ ବିନୟ ଭରେ ଶୀର ଅବନତ କରି କହିଲେ, ''ହେ ଗଜାନନ ! ଆପଣ ମୋ ତୀରର ଶକ୍ତି ବାହାରେ । ପରମ ଶିବହିଁ ମୋତେ ଦୟାବହ ବର ଦେଇଥିଲେ କି ମୁଁ ଯାହା ଆଗରେ ଦେଖାଦେବାକୁ ଇଚ୍ଛା କରିବି, ତାହା ଆଗରେ ରୂପ ପରିଗ୍ରହ କରି ପାରିବି । ଆପଣଙ୍କ ଓ ମୋ ଭିତରେ କିଛି ସାମଞ୍ଜସ୍ୟ ଅଛି । ତା'ଛଡ଼ା ମୁଁ ପାଖରେ ଥିଲି । ତେଣୁ ଆପଣଙ୍କୁ ଦେଖା ଦେଲି । ଆପଣ ବୃଷଭ ବାହନ ଶିବଙ୍କ ପୁତ୍ର । ମୁଁ ଗରୁଡ-ବାହନ ବିଷ୍ଣୁଙ୍କ ପୁତ୍ର । ଶିବ ମୋତେ ଭସ୍ମ କରି ଦେଇଥିଲେ । ସେହିପରି ସେ ଆପଣଙ୍କ ଶୀର ମଧ ଉଡ଼ାଇ ଦେଇଥିଲେ । ମୋ ବାହନ ଶୁକ ପକ୍ଷୀ । ଆପଣଙ୍କ ବାହନ ମୂଷିକ । ବିଚଳିତ ମନକୁ ନିୟନ୍ତ୍ରଣ ରଖିଲା ଭଳି ପାଶ ଓ ଅଙ୍କୁଶ ଆପଣଙ୍କ ଆୟୁଧ । ମୁଁ ବର୍ତ୍ତମାନ କୈଳାଶ ଅଭିମୁଖେ ଯାଉଛି । ଶୀଘ୍ର ଆପଣଙ୍କର ଏକ ଭ୍ରାତା ଜନ୍ମ ଗହଣ କରିବେ । ସେ କୁମାର । ତାଙ୍କରି ହାତରେ ପ୍ରବଳ ତାରକାସୁରର ନିଧନ ସମ୍ଭବ ହେବ । ଆଚ୍ଛା, ବିଦାୟ ।''

ବିଘ୍ନେଶ୍ୱର କହିଲେ, ''ତୁମ ସହ ସାକ୍ଷାତ ହେବାରୁ ଆନନ୍ଦିତ ହେଲି । ମୁଁ ବର୍ତ୍ତମାନ ଏକ ନୂତନ ସୌଧ ଦେଖିବା ନିମନ୍ତେ ବାହାରିଛି । ଆଚ୍ଛା, ବିଦାୟ ।''

କାମଦେବ ଅଦୃଶ୍ୟ ହୋଇ କୈଳାଶ ଅଭିମୁଖେ ଚାଲିଗଲେ । ବିଘ୍ନେଶ୍ୱର ଯାଇ ସୌଧ ପାଖରେ ପହଞ୍ଚିଲେ । ସୌଧର ସିଂହ ଦ୍ୱାର ନିକଟରେ ଗୋଟିଏ ଶଙ୍ଖମଲ୍‌ମଲ୍ ଶିଳା ଉପରେ ବସି ସେ ଚତୁର୍ଦ୍ଦିଗସ୍ଥ ପ୍ରକୃତିର ସୌନ୍ଦର୍ଯ୍ୟ ଉପଭୋଗ କରିବାକୁ ଲାଗିଲେ । ହିମାଳୟର ଜଳଧାରାମାନ ମନ୍ଦ ମଧୁର

ନାଦ କରି ଝରି ଆସୁଥାନ୍ତି । ସେହି ଶାନ୍ତିକୁ ଭଙ୍ଗ କରି ହଠାତ୍ ଶୁଭିଲା ଗୋଟିଏ ଭୀଷଣ ରଡି, ''ବିଘ୍ନେଶ୍ୱର ଗଲା କୁଆଡ଼େ ?''

ପରେ ପରେ ଗଜାସୁର-ରୂପୀ ବିଘ୍ନ ଆସି ଆକାଶରୁ ବିଘ୍ନେଶ୍ୱରଙ୍କ ଆଗରେ ଅବତରଣ କଲା । ସେ ଧକ୍କାରେ ମାଟି ଥରିଗଲା । ଗର୍ଜନ କରି ସେ କହିଲା, ''ମୁଁ ଗଜାସୁର । ତମେ ଯଦି ଗଜ ମୁଖ ଧାରୀ, ତେବେ ମୁଁ ହେଲି ଗଜକାୟ । ତମକୁ ସଂହାର କରିବା ମୋର ଉଦ୍ଦେଶ୍ୟ ।''

ବିଘ୍ନେଶ୍ୱର ନିରୀହ ଭାବରେ ଅନାଇ କହିଲେ, ''ତୋ ଉଦ୍ଦେଶ୍ୟ ଜାଣି ମୁଁ କ'ଣ କରିବି ବୋଲି ଭାବୁଛୁ ? ଆପାତତଃ ଏତିକି କରାଯାଉ !'' ଏହା କହି ସେ ଅସୁର ଉପରକୁ ପରଶୁ ଫୋପାଡ଼ିଲେ । ଅସୁରର ପାଦ ଛିନ୍ନ ହେଲା । ସେ ତଳେ ପଡିଗଲା । ସେହି ପର୍ବତ ପ୍ରମାଣ ରାକ୍ଷସର ଛାତି ଉପରେ ଚଢ଼ି ଯାଇ ବିଘ୍ନେଶ୍ୱର ତାଣ୍ଡବ ନୃତ୍ୟ ଆରମ୍ଭ କଲେ ।

ଅସୁର ଚିତ୍କାର କରି କହିଲା, ''ହେ ମହାନୁଭବ ! ମୁଁ ବିଘ୍ନ ଅଟେ । ଗଜାସୁର ରୂପ ଧରି ଆସିଥିଲି । ମୋତେ ଉପଯୁକ୍ତ ଶିକ୍ଷା ମିଳିଗଲା ।''

ବିଘ୍ନେଶ୍ୱର ଉତ୍ତରରେ କହିଲେ, ''ମୁଁ ବିଘ୍ନବିନାଶକାରୀ । ତେଣୁ ତୋତେ ଛିନ୍ନ-ବିଛିନ୍ନ କରିଦେବି । ସେଥିରେ ଅନ୍ୟଥା ହେବ ନାହିଁ । ତେବେ ତୁ ଯେତେବେଳେ ବ୍ରହ୍ମାଙ୍କ ବରର ଫଳ ରୂପେ ଆସିଛୁ, ବହୁଧା ବିଦୀର୍ଣ୍ଣ ହୋଇ ମଧ୍ୟ ତୁ ତୋ କରାମତି ଦେଖାଉଥିବୁ । ତୁ କାଳୀୟ ନାଗ ରୂପରେ କାଳିନ୍ଦୀ ସରୋବରରେ ଲୁଚି ରହିବୁ । ବାଳକୃଷ୍ଣ ତୋତେ ଦମନ କରିବେ । ତାଙ୍କ ଚରଣ ସ୍ପର୍ଶରେ ତୁ ପାପ-ମୁକ୍ତ ହେବୁ । ତୋ ଫଣାରେ ତାଙ୍କ ଚରଣଚିହ୍ନ ଅଙ୍କିତ ହେବ ।''

ଏହା କହି ବିଘ୍ନେଶ୍ୱର ବିଘ୍ନକୁ ଖଣ୍ଡ ବିଖଣ୍ଡ କରିଦେଲେ । ବିଘ୍ନର କଳେବର କ୍ଷୁଦ୍ର କ୍ଷୁଦ୍ର ଆକାରରେ ଏଣେ ତେଣେ ଉଡ଼ିଗଲା ।

ଦେବଗଣ ପ୍ରସନ୍ନ ହୋଇ ବିଘ୍ନେଶ୍ୱରଙ୍କ ଉପରେ ପୁଷ୍ପ ବୃଷ୍ଟି କଲେ । ବିଘ୍ନେଶ୍ୱରଙ୍କ ପ୍ରଶଂସାରେ ଶତମୁଖ ହେଲେ ଶିବ । ସେ ପାର୍ବତୀଙ୍କୁ ତାଙ୍କ ପୁତ୍ରଙ୍କ ଗୁଣର ବର୍ଣ୍ଣନା କରି ଆନନ୍ଦରେ ଅଧିର ହେଲେ । ବିଷ୍ଣୁ କିନ୍ତୁ ବିଘ୍ନେଶ୍ୱରଙ୍କ ବିବାହର ବ୍ୟବସ୍ଥା କରିବା ପାଇଁ ଆୟୋଜନ କଲେ ।





# ମାନବ ଧର୍ମ

ବିଷ୍ଣୁପୁର ଗ୍ରାମରେ ବିଷ୍ଣୁଶର୍ମା ନାମକ ଜଣେ ପଣ୍ଡିତ ରହୁଥିଲେ । ସେ ସେହି ଗ୍ରାମର ଶିଶୁମାନଙ୍କୁ ଗୋଟିଏ ଛୋଟ ଗୁରୁକୁଳ ସ୍ଥାପନ କରି ବିଦ୍ୟାଶିକ୍ଷା ଦେଉଥିଲେ । ଜ୍ଞାନଶର୍ମା ତା'ଙ୍କର ଏକମାତ୍ର ପୁତ୍ର । ସେ ଗଣିତ ବିଦ୍ୟାରେ ଖୁବ୍ ଦକ୍ଷ । ସେଥିପାଇଁ ତା'କୁ ରାଜାଙ୍କ ଦରବାରରେ ଚାକିରୀ ମିଳିଗଲା ଓ ସେ ରାଜଧାନୀରେ ବାସ କରେ ।

ବିଷ୍ଣୁଶର୍ମା ଗୁରୁକୁଳ ଆଶ୍ରମରେ ଶିଶୁମାନଙ୍କୁ ଅଧ୍ୟାପନା କାର୍ଯ୍ୟରେ ବ୍ୟସ୍ତ ରୁହନ୍ତି । ତେଣୁ ତା'ଙ୍କର ପୂର୍ବପୁରୁଷ ଅମଳର ଜମିବାଡ଼ିର କାର୍ଯ୍ୟ ଠିକ୍ ଭାବରେ ବୁଝାସୁଝା କରିପାରନ୍ତି ନାହିଁ । ତେଣୁ ଜମିବାଡ଼ିର ସମସ୍ତ ଦାୟିତ୍ୱ ସେ ରାଜନାଥଙ୍କ ହାତରେ ଅର୍ପଣ କରିଥିଲେ । ରାଜନାଥଙ୍କର ସୁବୁଦ୍ଧି ନାମରେ ଗୋଟିଏ ପୁତ୍ର ଥିଲା । ନାମ ଅନୁରୂପ ସୁବୁଦ୍ଧିଥିଲେ ବିଦ୍ୟାରେ ଖୁବ ପାରଙ୍ଗମ । ଗ୍ରାମର ଗୁରୁକୁଳରେ ସେ ଶିକ୍ଷା ଲାଭ କରିଛି ।

ନିଜର ପିତା ମାତାଙ୍କୁ ସାକ୍ଷାତ କରିବା ପାଇଁ ଦିନେ ଜ୍ଞାନ ଶର୍ମା ରାଜଧାନୀ ଛାଡ଼ି ନିଜର ପରିବାର ସହିତ ଗ୍ରାମରେ ଆସି ପହଞ୍ଚିଲେ । ରାଜାଙ୍କ ଦରବାରରେ ଉଚ୍ଚପଦରେ ଅଧିଷ୍ଠିତ ହୋଇଥିବାରୁ ଘୋଡା ଗାଡ଼ିରେ ଚାରି ପାଞ୍ଚ ଜଣ ସେବକଙ୍କ ସହିତ ସେ ବଡ ଥାଟରେ ଆସିଥିଲେ । ତା'ଙ୍କର ଆଭିଜାତ୍ୟ ଦେଖି ଗ୍ରାମର ଲୋକମାନେ ବହୁ ଆନନ୍ଦିତ ଓ ଗର୍ବିତ ଅନୁଭବ କଲେ । ରାଜ ଦରବାରରେ ଚାକିରୀ କଲେ ଏପରି ସବୁ ସୁବିଧା ଓ ସୁଯୋଗ ମିଳିବ ବୋଲି ସୁବୁଦ୍ଧି ଜାଣିନଥିଲା । ସେ ମଧ୍ୟ ଚିନ୍ତା କଲା ରାଜ ଦରବାରରେ ଚାକିରୀ କରିବ ଏବଂ ରାଜଧାନୀରେ ବେଶ୍ ଖୁସୀରେ କଳାତିପାତ କରିବ । ସେ ତା'ର ମନକଥା ମାତା ପିତାଙ୍କୁ ଜଣାଇଲେ ।

ରାଜନାଥ ଓ ରମାଦେବୀ ପୁତ୍ରର ଏପରି ଇଚ୍ଛା ଶୁଣି ସ୍ତବ୍ଧ ହୋଇଗଲେ । ରାଜନାଥ ପୁତ୍ରକୁ ବୁଝାଇ କହିଲେ, "ଚାଷବାସ ଆମର କୌଳିକ ବୃତ୍ତି । ପାଠ ପଢ଼ି ଶିକ୍ଷିତ ହେବା ସମସ୍ତଙ୍କ ପାଇଁ ଜରୁରୀ । ସେଥିପାଇଁ ମୁଁ ଗୁରୁକୁଳରେ ତୋତେ ଭର୍ତ୍ତି କରିଥିଲି । ସମସ୍ତେ ଯଦି ଚାକିରୀ କରିବାକୁ ଚାହିଁବେ, ତେବେ ମାଟି ମା'ର ଯତ୍ନ ନେବ କିଏ ? ନିଜର ନିଷ୍ପତ୍ତି ବଦଳାଇ ଆମ ସହିତ ଗ୍ରାମରେ ରୁହ ଓ ଚାଷବାସ



କର ।''

ମା' ରମାଦେବୀ ମଧ ବହୁତ ସ୍ନେହରେ କହିଲେ, ''ତୋତେ ଛାଡି ଆମେ କେମିତି ରହିବୁ । ଚାକିରୀ ମିଳିଲେ ତୁ ଆମକୁ ଛାଡି ଦୂରକୁ ଚାଲିଯିବୁ । ଆମେ ମାଟି ମା'କୁ ବିଶ୍ୱାସ କରୁ । ତେଣୁ ଆମେ ତୋ ସହିତ ମଧ ଯାଇ ପାରିବୁ ନାହିଁ ।''

ମା, ବାପାଙ୍କର କଥା ତା'ର ମନ ପରିବର୍ତ୍ତନ କରି ପାରିଲା ନାହିଁ । ଅର୍ଦ୍ଧରାତ୍ରରେ ଗୋଟିଏ ଥଳିରେ ନିଜର ଲୁଗାପଟା, ଶସ୍ୟ ବିକ୍ରୟରୁ ଆଦାୟ ହୋଇଥିବା ଅର୍ଥରୁ କିଛି ଅଂଶ ସାଙ୍ଗରେ ନେଇ ସେ ଚାକିରୀ ଖୋଜି ଯିବାକୁ ବାହାରି ପଡିଲା ।

ସକାଳ ହେବା ବେଳକୁ ସେ ଗୋଟିଏ ଗ୍ରାମର ସୀମାରେ ପହଞ୍ଚିଗଲା । ସେତେବେଳେ ତା'ରି ବୟସର ଗୋଟିଏ ଯୁବକ ତାଳ ଗଛରୁ ତାଡି ବାହାର କରି ମାଠିଆ ଓ କଟୁରୀ ଧରି ତଳକୁ ଓହ୍ଲାଉଥିଲା । ସେ ସୁବୁଦ୍ଧିକୁ ଦେଖି ସ୍ନେହରେ ପଚାରିଲା: ''କୁଆଡେ ବାହାରିଛୁ ଭାଇ ? ସୁବୁଦ୍ଧି ବିରକ୍ତ ହୋଇ ଉତ୍ତର ଦେଲା: ''ତୁମେ ତାଡି ବିକୁଛ ? ଯାହା କି' ଗୋଟିଏ ଖରାପ ନିଶା । ମୋ ପାଖରେ ତୁମର କାମ କ'ଣ ? ମୁଁ ଚାକିରୀ ଖୋଜି ବାହାରିଛି ।''

ସେହି ଯୁବକ ହସିଦେଇ କହିଲା: ''ମୋ ହାତରେ ତାଡିହାଣ୍ଡି ଓ କଟୁରୀ ଦେଖି ତୁମେ ଚିଡିଗଲ ନା ? ମୋର ନାମ କୁଶ । ମୁଁ ମଧ ତୁମ ପରି ଜଣେ ଶିକ୍ଷିତ । ଭାବିଥିଲି ଚାକିରୀ କରି ସୁଖ, ସମ୍ମାନର ସହିତ ଜୀବନ ବିତାଇବି । କିନ୍ତୁ ପ୍ରତ୍ୟେକ ମନୁଷ୍ୟର କିଛି ଦାୟିତ୍ୱ ରହିଛି । ମୁଁ ତାହା ଜାଣି ପାରିଲି ନାହିଁ । ଘର ଛାଡି ଚାଲିଗଲି । ମୋ ପାଇଁ କାନ୍ଦି କାନ୍ଦି ପିତାମାତା ଅନ୍ଧ ହୋଇଗଲେ । ଏହା ଶୁଣି ମୁଁ ଘରକୁ ଫେରି ଆସିଲି । ଏବେ ସେମାନଙ୍କର ଖୁସି ମୋ ପାଇଁ ସବୁକିଛି । ତା'ଙ୍କରି ସେବାରେ ମୋତେ ଅସୀମ ଆନନ୍ଦ ମିଳୁଛି । ଯଦି ତୁମ ପିତାମାତା ତୁମକୁ ଖୁବ୍ ଲୋଡୁଥାନ୍ତି, ତେବେ ଘରକୁ ଫେରିଯାଅ ।''

ତା'ଶୁଣି କଥା ସୁବୁଦ୍ଧି ହତପ୍ରଭ ହୋଇଗଲା । କିନ୍ତୁ ନିଜକୁ ସମ୍ଭାଳି ଦେଇ କହିଲା: ''ତୁମ କଥାରେ ସତ୍ୟତା ଅଛି, ଏହା ମୁଁ ସ୍ୱୀକାର କରେ । କିନ୍ତୁ ମନର ଇଚ୍ଛାକୁ ଅଟକାଇବା ସହଜ କଥା ନୁହେଁ । ମୁଁ ମୋ ନିଷ୍ପତ୍ତି ବଦଳାଇ ପାରିବି ନାହିଁ ।''

ସୁବୁଦ୍ଧି ପିତାମାତାଙ୍କୁ ମନେ ପକାଇ ଚିନ୍ତାଗ୍ରସ୍ତ ହୋଇ ପଡିଲା । ଘର କଥା ମନେ ପଡିଲା, ଦ୍ୱିପ୍ରହର ପର୍ଯ୍ୟନ୍ତ ସେ ବାଟ ଚାଲିଲା ଓ ଭୋକ ଲାଗିବାରୁ ଏକ ଗ୍ରାମ ନିକଟରେ କୁଡିଆ ଘର ପାଖରେ ଅଟକିଗଲା । ସେହି କୁଡିଆରେ ଜଣେ ମଧ ବୟସ୍କ ବ୍ୟକ୍ତି ବସିଥିଲେ ଓ ତା'ଙ୍କ ଚାରିପାଖରେ ଜଡ଼ିବୁଟି ଔଷଧ ଇତଃସ୍ତତ ପଡିଥିଲା । ସେ ଗୋଟିଏ ଗ୍ରନ୍ଥ ମନଦେଇ

ପଢୁଥିଲେ । ସୁବୁଦ୍ଧିର ପାଦଶବ୍ଦ ଶୁଣି ସେ ମଥା ଉଠାଇଲେ ଓ ତା'କୁ କହିଲେ: ''ଏତେ ଖରାରେ କୁଆଡେ ବାହାରିଛ ?'' ସୁବୁଦ୍ଧି ସବୁକଥା ବର୍ଣ୍ଣନା କଲା ।

ସେହି ମଧ୍ୟବୟସ୍କ ଲୋକ ସବୁ ଶୁଣି ସାରିବା ପରେ ନିଜର ପରିଚୟ ପ୍ରଦାନ କରି କହିଲେ: ''ମୋର ନାମ ଗୁରୁନାଥ, ମୋର କେହି ନିଜଲୋକ ନାହାନ୍ତି । ସଂସାର ପ୍ରତି ବିତସ୍ପୃହ ଥିବା ସମୟରେ ଜଣେ ସିଦ୍ଧବାବା ମୋତେ ତା'ଙ୍କ ସାଂଗରେ ଏଠାକୁ ନେଇ ଆସିଲେ । ତାଙ୍କ ରଚିତ ବୈଦ୍ୟ ଗ୍ରନ୍ଥ ପାଠ କରି ମୁଁ ଔଷଧ ସମ୍ପର୍କରେ ବିଶେଷ ଜ୍ଞାନ ହାସଲ କରିପାରିଛି । ଏବେ ଚକ୍ଷୁହୀନ ଲୋକମାନଙ୍କର ଚିକିତ୍ସା ପାଇଁ ଏହି ଗ୍ରନ୍ଥ ପାଠ କରୁଛି । ଏହା ସିଦ୍ଧବାବାଙ୍କ ଆଶ୍ରମ । ସେ ସକାଳୁ ବାହାରକୁ ଯାଇଛନ୍ତି, ଅଳ୍ପ ସମୟ ମଧ୍ୟରେ ଫେରି ଆସିବା କଥା ।''

କିଛି ସମୟ ପରେ ସିଦ୍ଧ ବାବା ଫେରି ଆସିଲେ । ସୁବୁଦ୍ଧି ସମ୍ପର୍କରେ ସବୁ ଶୁଣିବା ପରେ ସେ ତା' ପାଇଁ ଭୋଜନର ବ୍ୟବସ୍ଥା କରାଇଲେ ।

ତା'ପରେ ସେ ସୁବୁଦ୍ଧିକୁ କହିଲେ, ''ରାସ୍ତାରେ ତୁମେ ଯେଉଁ କୁଶକୁ ଭେଟିଲ, ସେ ଜୀବନର ଏକ ମହାନ ସତ୍ୟ ତୁମ ଆଗରେ ପ୍ରକାଶ କରିଛି, ସେହି ଯୁବକ ଧନ୍ୟ, ଯିଏ ନିଜର ପିତା-ମାତାଙ୍କ ସେବାରେ ନିଜକୁ ସମର୍ପଣ କରିଛି । ନିଜର କୌଳିକ ବୃତ୍ତିକୁ ସମ୍ମାନ କରିଛି । ଏହା ହେଉଛି ମାନବ ଧର୍ମ ଓ ସେ ତା'କୁ ପୂର୍ଣ୍ଣପ୍ରାଣରେ ପାଳନ କରୁଛି । ଚାଲ, ଆମେ ସମସ୍ତେ ତାଙ୍କ ଘରକୁ ଯିବା । ସେଠାରେ ମୁଁ ସତ୍ୟ ପ୍ରମାଣିତ କରିବି ।''

ସିଦ୍ଧବାବା କୁଶକୁ କହିଲେ: ''ତୁମ ସମ୍ବନ୍ଧରେ ମୁଁ ସୁବୁଦ୍ଧିଠାରୁ ଜାଣିବାକୁ ପାଇଲି । ତୁମର ପିତାମାତାଙ୍କ ସେବା ପ୍ରଶଂସନୀୟ । ତୁମ



ପିତାମାତାଙ୍କ ଅନ୍ଧତ୍ୱ ଦୂର କରିବା ପାଇଁ ମୁଁ ମୋ ସହିତ ଜଡିବୁଟି ଆଣିଛି । ତୁମେ ତିନିଜଣ ତା'ଙ୍କ ଅନ୍ଧତ୍ୱ ଦୂର କରିବା ପାଇଁ ପ୍ରାର୍ଥନା କରି ତା'ଙ୍କ ଆଖିରେ ଔଷଧ ଲେପନ କରିବ ।'' ଏପରି କହି ସିଦ୍ଧବାବା ପ୍ରଥମେ ଗୁରୁନାଥଙ୍କୁ ଔଷଧ ଦେଲେ ।

ଗୁରୁନାଥ ଚକ୍ଷୁକୁ ସ୍ପର୍ଶ କରି କହିଲେ, ''ସିଦ୍ଧବାବାଙ୍କ କଥା ଅନୁସାରେ ମୁଁ ଏହି ଔଷଧ ପ୍ରସ୍ତୁତ କରିଛି । ଏତେଦିନ ପରେ ଏହି ଔଷଧ ପରୀକ୍ଷାର ସମୟ ଆସିଛି । ତା'ପରେ ସେ ଯୁବକର ବାପା, ମା'ଙ୍କୁ କହିଲେ, ''ଆପଣ ମାନେ ଦେଖି ପାରିଲେ ମୋର ଜୀବନ ଧନ୍ୟ ହୋଇଯିବ ।'' ଏହାପରେ ସେ ତା'ଙ୍କ ଚକ୍ଷୁରେ ଔଷଧ ଲେପନ କଲେ ।

ସମସ୍ତେ ନିରବରେ ଅପେକ୍ଷା କଲେ । ଗୁରୁନାଥ ପ୍ରସ୍ତୁତ କରିଥିବା ଔଷଧରେ ନିଶ୍ଚୟ ଭଲ କାମ ଦେବ । ମାତ୍ର ସେମିତି କିଛି ହେଲା ନାହିଁ ।

ଔଷଧର କିଛି ପ୍ରଭାବ ଜଣା ପଡିଲା ନାହିଁ। ଏହାପରେ ସିଦ୍ଧବାବା ସେ କାମ ସୁବୁଦ୍ଧିକୁ ଦେଲେ।

ସୁବୁଦ୍ଧି କହିଲା: "ମୁଁ ଘରୁ ଚାଲି ଆସିଛି। ମାତ୍ର ତା'ର ଅର୍ଥ ନୁହେଁ ଯେ, ମୁଁ ମୋର ପିତାମାତାଙ୍କୁ ଭଲ ପାଏ ନାହିଁ। ମୋର ପୂର୍ଣ୍ଣ ବିଶ୍ୱାସ ଯେ, ଏହି ଔଷଧରେ ଆପଣମାନଙ୍କର ଚକ୍ଷୁ ଭଲ ହୋଇଯିବ।"

କିନ୍ତୁ ତା'ଦ୍ୱାରା ମଧ କିଛି ସୁଫଳ ମିଳିଲା ନାହିଁ। ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ। ସିଦ୍ଧବାବା ସ୍ମିତହସି କହିଲେ, "ଗୁରୁନାଥର କେହି ନାହାନ୍ତି। ତେବେ ମଧ ଜୀବନରେ ବଡ ହେବାର, ନାମ ଅର୍ଜନ କରିବାର ଇଚ୍ଛା, ଆକାଂକ୍ଷା ତା'କୁ ଗ୍ରାସ କରିଛି। ଜୀବନରେ ଧନ, ସୁଖ ଓ ଆଭିଜାତ୍ୟ ଲାଭ କରିବାର ଇଚ୍ଛା ଦ୍ୱାରା ପ୍ରେରିତ ହୋଇ ସୁବୁଦ୍ଧି ଘର ଛାଡିଛି ଓ ମାତାପିତାଙ୍କ ମନରେ ଦୁଃଖ ଦେଇଛି। ଏବେ ଦେଖିବା, କୁଶ ତା'ର ପିତା-ମାତାଙ୍କର ଅନ୍ଧତ୍ୱ ଦୂର କରିବାରେ ସଫଳ ହେଉଛି କି ନାହିଁ।" ଏପରି କହି ସେ କୁଶ ହାତରେ ଔଷଧ ବଢ଼ାଇ ଦେଲେ।

କୁଶ ମଥା ତଳକୁ କରି ସିଦ୍ଧବାବାଙ୍କୁ ବିନୟ ସହକାରେ ପ୍ରଣାମ ଜଣାଇଲା ଓ କହିଲା, "ଯେଉଁ ବାପା, ମା ଆମକୁ ଜନ୍ମ ଦେଇଛନ୍ତି ସେମାନେ ଆମ ଇହକାଳର ଦେବତା ସେମାନଙ୍କର ସେବାକୁ ମୁଁ ମୋର ଜୀବନର ପରମ ଧର୍ମ ଭାବେ ଗ୍ରହଣ କରିଛି। ତା'ଙ୍କର ଇଚ୍ଛା ଅନୁସାରେ ଜୀବନ ବିତାଇବା ମୋର ଆଦର୍ଶ। ମୋ ଦୃଷ୍ଟିରେ ଏହା ହିଁ ଉତ୍ତମ ମାନବ ଧର୍ମ।" ଏପରି କହି ସେ ପିତା-ମାତାଙ୍କ ଚକ୍ଷୁରେ ଔଷଧ ଲେପନ କଲା।

ସମସ୍ତେ ଚାହିଁ ରହିଲେ, କ'ଣ ଘଟୁଛି ଦେଖିବା ପାଇଁ କିନ୍ତୁ କୁଶ ତା' ବାପା, ମା'ଙ୍କ ପ୍ରତି ଥିବା ତା'ର ଭକ୍ତି, ଶ୍ରଦ୍ଧା ଓ ବିଶ୍ୱାସ ପ୍ରତି ଅଟଳ ରହିଥିଲା କେହି କେହ କାହିବାକୁ ଆରମ୍ଭ କଲେ ଯଦି କିଛି ଘଟିବ ତେବେ ସିଦ୍ଧବାବାଙ୍କ ଦ୍ୱାରା ଘଟିବ। ମାତ୍ର କିଛି କ୍ଷଣ ପରେ କୁଶ ପିତା-ମାତାଙ୍କର ଦୃଷ୍ଟି ଶକ୍ତି ଫେରି ଆସିଲା। ସେମାନେ ସ୍ପଷ୍ଟ ଭାବେ ଦେଖି ପାରିଲେ। ଏପରି ଚମତ୍କାରିତା ଦେଖି ସମସ୍ତେ ଆଶ୍ଚର୍ଯ୍ୟ ହେଲେ। ସୁବୁଦ୍ଧି ସିଦ୍ଧବାବାଙ୍କୁ ପ୍ରଣାମ କରି କହିଲା, "ମାତା-ପିତାଙ୍କର ସେବା କରିବା ସର୍ବୋତ୍ତମ ମାନବ-ଧର୍ମ। ଏହା ମୁଁ ଏବେ ବୁଝି ପାରିଲି" ତା'ପରେ ସେ ବିଷ୍ଣୁପୁର ଫେରିଯାଇ ପିତାମାତାଙ୍କ ସହିତ ସୁଖପୂର୍ବକ ଜୀବନ ବିତାଇଲା।






# ଜଣା ଅଛି-ଜଣାନାହିଁ

ମଙ୍ଗଳପୁରୀ ରାଜ୍ୟରେ ମାୟାବର୍ମା ନାମକ ଜଣେ ରାଜା ରାଜତ୍ୱ କରୁଥିଲେ । ତା'ଙ୍କ ମନ୍ତ୍ରୀଙ୍କର ଦେହାନ୍ତ ଘଟିବା ପରେ ସେ ନୂତନ ମନ୍ତ୍ରୀଙ୍କୁ ନିଯୁକ୍ତ କରି ନ ଥିଲେ । ନିଜେ ରାଜା ଓ ମନ୍ତ୍ରୀ ଉଭୟ ଦାୟିତ୍ୱରେ ରହି ଶାସନ ଚଳାଇଥିଲେ ।

ପ୍ରଜାଙ୍କର ସୁଖଦୁଃଖ ରାଜା ନିଜେ ଜାଣିବା କଥା । ତେଣୁ ସେ ବେଶ ବଦଳାଇ ଦୁଇଜଣ ଅଙ୍ଗରକ୍ଷୀଙ୍କୁ ସାଙ୍ଗରେ ଧରି ଲୋକମାନଙ୍କ ଭଲମନ୍ଦ ଜାଣିବାକୁ ବୁଲୁଥିଲେ । କିନ୍ତୁ ରାଜା ଚତୁର କିମ୍ବା ବୁଦ୍ଧିମାନ ନ ଥିଲେ ।

ଦିନେ ରାଜା ବେଶ ବଦଳାଇ ବୁଲୁଥିବା ସମୟରେ ଗୋଟିଏ ଘର ଭିତରୁ ପତିପତ୍ନୀଙ୍କର କଳି-ଝଗଡା ତା'ଙ୍କ କାନରେ ପଡିଲା ।

''ଛି, ଛି, କ'ଣ ଏପରି କରିଛ ? ଯଦି କହିଥାନ୍ତ ତୁମକୁ ଜଣାନାହିଁ, ତେବେ ମୁଁ ନିଜେ କରି ଦେଇଥାନ୍ତି ।'' ପତି କହୁଥିଲେ ।

''ତୁମକୁ କ'ଣ ଜଣାଅଛି କହିଲ ? କ'ଣ ନା', ମୋତେ ସବୁ ଜଣା, ମୋ ପୁଅ ଯାହା ଜାଣିଛି, ତୁମେ ସେତିକି ବି ଜାଣିନାହଁ, ପତ୍ନୀ ଜବାବ ଦେଲେ ।

''ବେଶୀ ବକବକ ହୁଅନା । ନିଜକୁ କିଛି ଜଣାଥିଲେ ତ ! ଏଇ ଛୋଟ କାମଟା ମୁଁ କରି ପାରି ନ ଥାନ୍ତି ? ମୋତେ କ'ଣ ଭାବିଛ କି ? ସୁଯୋଗ ମିଳିଲେ ମୁଁ ରାଜ୍ୟ ଶାସନ କରିପାରିବି ।'' ପତି ବଢାଇ କରି କହିଲେ ।

ଏ କଥା କାନରେ ପଡିବା ମାତ୍ରେ ରାଜା ନିଜ କାନ ବନ୍ଦ କରି ମହଲରେ ପହଞ୍ଚିଲେ । ତା' ପରଦିନଠାରୁ ସେ ଗୋଟିଏ ନୂତନ ଆଇନ ଜାରୀ କଲେ ! ସେହି ଆଇନ ଅନୁସାରେ ରାଜ୍ୟର କୌଣସି ଲୋକ କହି ପାରିବ ନାହିଁ ଯେ, ''ମୋତେ ସବୁ ଜଣାଅଛି ।'' ଯଦି କେହି ଏପରି କହେ, ତେବେ ତା'କୁ କଠୋର ଦଣ୍ଡ ମିଳିବ ।

ଏହି ଆଇନ ଲୋକମାନଙ୍କୁ ବଡ ଅସୁବିଧାରେ ପକାଇଲା । ଦଣ୍ଡ ଭୟରେ ସମସ୍ତେ ସମସ୍ତଙ୍କର କଥାର ଉତ୍ତରରେ କହିଲେ, ''ମୋତେ ଜଣାନାହିଁ ।'' ଏହା ସେମାନଙ୍କର ଅଭ୍ୟାସରେ ପଡିଗଲା ।

କିଛି ଦିନ ପରେ ସେହି ରାଜ୍ୟକୁ ଅନ୍ୟ ରାଜ୍ୟର

(ପଚିଶ ବର୍ଷ ତଳର ଜହ୍ନମାମୁରେ ପ୍ରକାଶିତ)

ଦୁଇଜଣ ବେପାରୀ ଆସିଲେ । ସେମାନେ ଜାଣି ପାରିଲେ ଯେ, ଏହି ରାଜ୍ୟର କୌଣସି ଲୋକଙ୍କୁ କିଛି ପଚାରିଲେ ସେ କହୁଛନ୍ତି, ''ଆମକୁ ଜଣାନାହିଁ ।'' କେତେଜଣଙ୍କୁ ଏକାଠି କରି ସେ ଦୁହେଁ ପଚାରିଲେ- ''ତୁମ୍ଭେମାନେ ସବୁ କଥାର ଉତ୍ତର ଏପରି କାହିଁକି କହୁଛ, ''ଆମକୁ ଜଣାନାହିଁ ।'' କଥା କ'ଣ ?''

''ଆମେ ଜାଣିନୁ ଆଜ୍ଞା ! ଆମକୁ କିଛି ଜଣାନାହିଁ । ଆପଣ ଆମକୁ କଥା ପଚାରିଲେ ଆମେ ସେଇ ଗୋଟିଏ ଉତ୍ତର ଦେବୁ ।'' ଲୋକମାନେ କହିଲେ ।

ଯେତେବେଳେ ଏଇ କଥାବାର୍ତ୍ତା ଚାଲିଥିଲା, ସେତେବେଳେ ରାଜା ଛଦ୍ମବେଶରେ ସେଠାରେ ଉପସ୍ଥିତ ଥିଲେ । ସେ ଜନତା ଓ ବିଦେଶୀଙ୍କର କଥା ମଧ୍ୟ ଶୁଣିଲେ ।

ତେଣୁ ରାଜା ତା' ପରଦିନ ଆଉ ଏକ ଆଇନ ଜାରୀ କଲେ ରାଜ୍ୟର କୌଣସି ଲୋକ, କୌଣସି ପରିସ୍ଥିତିରେ ମଧ୍ୟ କହି ପାରିବ ନାହିଁ ଯେ, ''ମୋତେ ଜଣା ନାହିଁ ।'' ଯିଏ ଏପରି କହିବ, ତା'କୁ କଠୋର ଦଣ୍ଡ ମିଳିବ ।''

ସେ ଦିନଠାରୁ ରାଜ୍ୟରେ 'ଜଣା' କି 'ଅଜଣା' କି 'ଜଣାନାହିଁ' ଏପରି ଶବ୍ଦ କେହି ବ୍ୟବହାର କଲେ ନାହିଁ । ସତେ ଯେପରି ଲୋକ ମାନଙ୍କ ମୁହଁ କିଏ ସିଲେଇ କରି ଦେଇଛି ।

ବିଦେଶୀ ଦ୍ୱୟଙ୍କ ଉପସ୍ଥିତିରେ ଏସବୁ ଘଟିଲା । ତେଣୁ ସେମାନଙ୍କର ସବୁ କାରବାର ବନ୍ଦ ହୋଇଗଲା । ସେମାନେ ରାଜାଙ୍କ ନିକଟକୁ ଏକ ପତ୍ର ଲେଖିଲେ ଓ ଦର୍ଶନ କରିବାକୁ ଆବେଦନ କଲେ । ସେମାନେ ଏପରି ଲେଖିଥିଲେ । ''ରାଜନ ! ଆମେ ବିଦେଶରୁ ଆସିଛୁ । ଆପଣଙ୍କ ଆଇନ ସମସ୍ତଙ୍କର ମୁହଁ ବନ୍ଦ କରି ଦେଇଛି । ବିଦେଶୀ ହୋଇଥିବାରୁ ଏପରି ଆଇନ ଆମ କାମରେ ବାଧା ସୃଷ୍ଟି କରୁଛି । ଏପରି ଆଇନ ପ୍ରଣୟନ ପଛରେ ନିଶ୍ଚୟ କିଛି କାରଣ ଥିବ ।



କୃପାବଶତଃ ଆପଣ ଆମକୁ ସେଇ କାରଣ ଜଣାଇଲେ ଆମେ ସମସ୍ୟାର ସମାଧାନ ପାଇଁ ଚେଷ୍ଟା କରିବୁ ।'' ରାଜା ବିଦେଶୀଙ୍କୁ ଡକାଇ ସେମାନଙ୍କୁ ସେଦିନର ଦମ୍ପତି କଥାଭାଷା ପ୍ରସଙ୍ଗ ଜଣାଇଲେ ।

ବିଦେଶୀ ଦ୍ୱୟ ରାଜାଙ୍କ କଥା ଶୁଣି କହିଲେ, ''ସେହି ଦମ୍ପତି କେଉଁ ପ୍ରସଙ୍ଗରେ ଏପରି କଥା କହିଲେ, ତାହା ଭଲ ଭାବେ ଜାଣିବା ଉଚିତ ଥିଲା ।''

ରାଜା ବେଶ ବଦଳାଇ ସେହି ବିଦେଶୀଙ୍କୁ ସାଙ୍ଗରେ ଧରି ସେହି ଦମ୍ପତିଙ୍କ ଗୃହରେ ପହଞ୍ଚିଲେ । ଗୃହ ମାଲିକଙ୍କୁ ପ୍ରଶ୍ନ କଲେ- ''କିଛି ଦିନ ତଳେ ତୁମେ ତୁମ ପତ୍ନୀଙ୍କୁ କହିଥିଲ ଯେ, ତୁମକୁ ସବୁ ଜଣା ଅଛି, ଏପରି କି ତୁମେ ରାଜ୍ୟ ଶାସନ ମଧ୍ୟ କରିପାରିବ । କ'ଣ ମନେ ପଡୁଛି ?

ମୋତେ ମୋ ଘର ଚଳାଇବା ମଧ୍ୟ ଜଣାନାହିଁ, ମୁଁ କେଉଁଠୁ ରାଜ୍ୟ ଶାସନ କରିପାରିବି । ରାଜାଙ୍କ ଆଇନ ହେବା ପୂର୍ବରୁ ମୁଁ ଏପରି କହିଥିଲି । ସେଦିନ ମୋ ପତ୍ନୀ ରୋଷେଇର ସ୍ୱାଦ ବିଗାଡି ଦେଇଥିଲେ । ତେଣୁ ମୁଁ ତାଙ୍କୁ ଧମକ ଦେଇଥିଲି । ଯେଉଁ ସ୍ତ୍ରୀଙ୍କୁ କିଛି ଜଣାନାହିଁ, ସେ ମୋତେ ବାରମ୍ବାର କହୁଛନ୍ତି, ''ତୁମକୁ କିଛି ଜଣାନାହିଁ ।'' ଏପରି କହିଲେ କ'ଣ ଲାଗିବ କହିଲେ ? ରାଗ ଲାଗିବ କି ନାହିଁ ? ତେଣୁ ବିରକ୍ତିରେ ମୋ ମନକୁ ଯାହା ଆସିଲା, ତାହା ବକିଗଲି ।'' ସେହି ଲୋକ କହିଲା ।

''ଶୁଣିଲେ ମହାରାଜ ! ସାଧାରଣ ଲୋକ ଏପରି କିଛି କହିଦେଲେ, ଆପଣ ତା'କୁ ଗୁରୁତ୍ୱ ଦେଇ ବସିଲେ ଓ ଆଇନ ତିଆରି କରିଦେଲେ । ଏଥିରେ ସାରା ରାଜ୍ୟର ପ୍ରଜାମାନଙ୍କର ଭୀଷଣ ଅସୁବିଧା ହେଉଛି । ଆପଣଙ୍କୁ ରାଜ କାର୍ଯ୍ୟରେ ପରାମର୍ଶ ଦେବାପାଇଁ ବିଜ୍ଞ ମନ୍ତ୍ରୀ ନାହାଁନ୍ତି କି କ'ଣ ?'' ବିଦେଶୀ ରାଜାଙ୍କୁ କହିଲେ ।

''ଆମ ରାଜ୍ୟର ପୂର୍ବତନ ମନ୍ତ୍ରୀଙ୍କର ସ୍ୱର୍ଗବାସ ପରେ, ମୁଁ ଏ ପର୍ଯ୍ୟନ୍ତ ନୂତନ ମନ୍ତ୍ରୀ ମନୋନୀତ କରିନାହିଁ । ତୁମେ ଦୁହେଁ ମନ୍ତ୍ରୀ ପଦ ସ୍ୱୀକାର କରି ମୋତେ ସାହାଯ୍ୟ କରି ପାରିବ କି ? ତୁମେ ଦୁଇଜଣ ବୁଦ୍ଧିମାନ ମନେ ହେଉଛ ।'' ରାଜା କହିଲେ ।

ବିଦେଶୀ ଦ୍ୱୟ ରାଜାଙ୍କର ଅନୁରୋଧକୁ ସାଦରେ ଗ୍ରହଣ କଲେ ଓ ସେ ରାଜ୍ୟର ନାଗରିକତ୍ୱ ଗ୍ରହଣ କଲେ । ସେହିଦିନଠାରୁ ରାଜ୍ୟର କାର୍ଯ୍ୟ ସୁରୁଖୁରୁରେ ଚାଲିଲା ଓ ପ୍ରଜାମାନେ ଆନନ୍ଦରେ କାଳାତିପାତ କଲେ ।





# ଗୌରୀର ଉପାୟ

କୋଶଳ ରାଜ୍ୟର ଏକ ନଗରୀରେ ଦାମୋଦର ନାମକ ଜଣେ ଚୋର ରହୁଥିଲା । ସେହି ଯୁବକ ଚୋରି କାମରେ ଅତ୍ୟନ୍ତ ଦକ୍ଷ ଥିଲା । ଯେତେ ଶକ୍ତ ତାଲା ହେଲେ ବି ସେ ସହଜରେ ଭାଙ୍ଗି ଦେଉଥିଲା । ବିରାଡି ପରି ପାଦ ଚିପି ଚିପି ସେ ଘରେ ପଶୁଥିଲା ଯେ, ଆଦୌ ଶବ୍ଦ ହେଉ ନଥିଲା । ଯେତେ ଅନ୍ଧାର ହେଉ ପଛେ, କେଉଁଠି କ'ଣ ଅଛି ଜାଣି ପାରୁଥିଲା । ଏ ସବୁ ଥିଲା ତା'ର ବିଶେଷ ଗୁଣ ।

ଚୋରି କଳାରେ ତା'ର ଏପରି ଦକ୍ଷତା ଦେଖି ସେହି ଧନ୍ଧାରେ ଲାଗିଥିବା କନ୍ୟାପିତା ମାନେ ତା' ସହିତ ନିଜ ନିଜ କନ୍ୟାର ବିବାହ କରାଇବାରେ ଇଚ୍ଛୁକ ଥିଲେ । କିନ୍ତୁ ସେ କହୁଥିଲା, ''ରାଜାଙ୍କ ଖଜଣାଖାନା ଲୁଟିବା ମୋର ଶ୍ରେଷ୍ଠ ଲକ୍ଷ୍ୟ । ଯେତେଦିନ ଯାଏଁ ମୁଁ ସେଥିରେ ସଫଳ ହୋଇନାହିଁ, ମୁଁ ବିବାହ ନ କରିବା ପାଇଁ ପ୍ରତିଜ୍ଞା କରିଛି ।''

ଦାମୋଦର ଯେଉଁ ଚୋର ଦଳରେ କାମ କରୁଥିଲା, ସେଥିରେ ସୁରନନ୍ଦନ ନାମକ ଜଣେ ପୁରୁଖା ଚୋର ଥିଲା । ଅକସ୍ମାତ୍ ଦିନେ ଦାମୋଦର ସହିତ ସୁରନନ୍ଦନ କନ୍ୟା ଗୌରୀର ଭେଟ ହୋଇଗଲା । ଗୌରୀ ଦେଖିବାକୁ ଖୁବ୍ ସୁନ୍ଦର । ଚୋରଙ୍କ ଦଳରେ ଏପରି ସୁନ୍ଦରୀ କନ୍ୟା ଆଉ କେହି ନ ଥିଲେ । ତା'ର ଗୌରୀ ଖୁବ୍ ପସନ୍ଦ ହେଲା । ଯେ କୌଣସି ଉପାୟରେ ସେ ଗୌରୀକୁ ବିବାହ କରିବା ପାଇଁ ନିଷ୍ପତ୍ତି ନେଲା ।

ଏବେ ସେ ବୁଝିପାରିଲା ଯେ ରାଜାଙ୍କ ଖଜଣାଖାନା ଲୁଟିବା ଏତେ ସହଜ କାମ ନୁହେଁ । ବର୍ଷ ବର୍ଷ ବିତିଗଲେ ବି ତା'କୁ ସଫଳତା ମିଳି ନ ପାରେ । ହୁଏତ, ସେ ସମୟ ଭିତରେ ଗୌରୀର ବିବାହ ସରି ଯାଇଥିବ । ତେଣୁ ଏପରି କାମରେ ଆଉ ଡେରି କରିବା ଉଚିତ୍ ନୁହେଁ । ସେ ତୁରନ୍ତ ଗୌରୀର ବାପାଙ୍କୁ ଭେଟିବାକୁ ଗଲା ।

ଦାମୋଦର ସୁରନନ୍ଦନକୁ ପ୍ରଣାମ ଜଣାଇ କହିଲା, ''ମୋର ନାମ ଦାମୋଦର । ସମସ୍ତେ ଜାଣିଛନ୍ତି ଯେ ଚୋରି ବିଦ୍ୟାରେ ମୋର ସମକକ୍ଷ କେହି ନାହାନ୍ତି ।'' ଗୌରୀର ବାପା କହିଲେ: ''ଚୋରି ଅପରାଧରେ ମୁଁ ଆଜି ଯାଏଁ ଧରାପଡ଼ି ନାହିଁ । ମୁଁ ତୁମ ବିଷୟରେ ଜାଣିଛି । କିନ୍ତୁ ତୁମେ

ଏଠାକୁ କେଉଁ କାମରେ ଆସିଛ, ପ୍ରଥମେ କୁହ ।''

ଦାମୋଦର କୁଣ୍ଠିତ ଭାବେ କହିଲା, ''ବିବାହ କରିବା ପାଇଁ ଇଚ୍ଛା ପ୍ରକାଶ କରୁଛି ।'' ଏପରି କହି ସେ ଅଟକିଗଲା ।

ତା' କଥା ଶୁଣି ସୁରନନ୍ଦନ ହସି ଦେଇ କହିଲା: ''ତୁମର ଇଚ୍ଛାରେ କିଛି ଭୁଲ ନାହିଁ । ତୁମର ଏବେ ବିବାହ ଉପଯୁକ୍ତ ବୟସ । ଏହି ସମ୍ବନ୍ଧରେ ମୁଁ ତୁମକୁ କିଛି ସାହାଯ୍ୟ କରିବି କି ? ତୁମେ କନ୍ୟା ପସନ୍ଦ କରି ସାରିଛ କି ?''

ଏଥରକ ଦାମୋଦର ସାହସ ଠୁଳାଇ କହିଲା: ''ଆପଣଙ୍କ କନ୍ୟା ଗୌରୀ ମୋର ପସନ୍ଦ ହୋଇଛି । ମୁଁ ତା'କୁ ବିବାହ କରିବା ପାଇଁ ଅତ୍ୟନ୍ତ ଆଗ୍ରହୀ ।''

ଏହା ଶୁଣି ସୁରନନ୍ଦନ ଚମକି ପଡିଲା ଓ କହିଲା: ''ଏହାର ଅର୍ଥ ହେଉଛି ତୁମେ ମୋର କନ୍ୟାକୁ ଆଗରୁ ଜାଣ । ମୋ ଝିଅଠାରୁ ବଳି କେହି ସୁନ୍ଦରୀ ଆମ ବିରାଦରରେ ନାହାନ୍ତି । କିନ୍ତୁ ତୁମେ ଏହା ମଧ୍ୟ ଜାଣିବା ଉଚିତ ଯେ ସେ ଖୁବ୍ ଚାଲାକ ଓ ତା'ର ମୁହଁ ବଡଟାଣ । ସେ ଆମ ବୃତ୍ତିକୁ ତୀବ୍ର ଘୃଣା କରେ । ତୁମକୁ ଜୋଇଁ କରିବାରେ ମୋର କିଛି ଆପତ୍ତି ନାହିଁ । ମୁଁ ଏହି ପ୍ରସ୍ତାବରେ ଏକମତ । କିନ୍ତୁ ତା'ର ଇଚ୍ଛା ମଧ୍ୟ ଜାଣିବା ଜରୁରୀ ନୁହେଁ କି ?'' ଏପରି କହି ସେ ଘର ଭିତରକୁ ଗଲେ ଓ ଗୌରୀକୁ ଡାକି ଆଣିଲେ ।

ଗୌରୀ ବାପାଙ୍କଠାରୁ ସବୁ କଥା ଶୁଣିବା ପରେ ଦାମୋଦରକୁ କହିଲା: ''ମୁଁ ମଧ୍ୟ ଶୁଣିଛି ଯେ ତୁମେ ଚୋରି କରିବାରେ ସିଦ୍ଧହସ୍ତ । କିନ୍ତୁ ମୁଁ ତୁମକୁ ଚୋରି କରୁଥିବାବେଳେ ପ୍ରତ୍ୟେକ୍ଷରେ ଦେଖିବାକୁ ଚାହେଁ । ମୋ ଅଜାଣତରେ ମୋ ଠାରୁ ମୋର କୌଣସି ଜିନିଷ ଚୋରାଇ ପାରିଲେ, ମୁଁ ତୁମକୁ ବିବାହ କରିବି ।''



''ଏହା ମୋର ବାମ ହାତର ଖେଳ ।'' ଏପରି କହି ଦାମୋଦର ସେଠାରୁ ଚାଲିଆସିଲା ।

ଦୁଇଦିନ ପରେ ଗୌରୀଙ୍କ ଗ୍ରାମ ପାଖରେ ଏକ ମେଳା ଆରମ୍ଭ ହେଲା । ଦାମୋଦର ଏହା ଜାଣିବା ପରେ ବେଶ ବଦଳାଇ ସେଠାରେ ପହଞ୍ଚିଗଲା । ଗୋଟିଏ ଟୋକେଇରେ ଛୋଟ ଛୋଟ ଖେଳଣା ରଖି ସେଠାରେ ବିକିବାର ଅଭିନୟ କଲା । ଗୌରୀ ବିଭୋର ହୋଇ ମେଳା ବୁଲି ଦେଖୁଥାଏ । ଦାମୋଦର ପାଦ ଚାପି ଚାପି ତା'ର ପିଛା କଲା । ଗୌରୀ ବେକରେ ଚନ୍ଦ୍ରହାର ପିନ୍ଧିଥିଲା । ତା'କୁ ଚୋରାଇ ଆଣି ନିଜକୁ ଦକ୍ଷଚୋର ସାବ୍ୟସ୍ତ କରିବା ପାଇଁ ଦାମୋଦର ଠିକ୍ କରିଥିଲା ।

ଯେତେବେଳେ ଗୌରୀ କିଛି କିଣିବା ପାଇଁ ତଳକୁ ନଇଁ ପଡିଥିଲା, ବଡ ସତର୍କରେ ଦାମୋଦର ତା' ଗଳାରୁ ଚନ୍ଦ୍ରହାର ନେଇ ଆସିଲା । ଭିଡ ଭିତରେ କେହି ଜାଣି ପାରିଲେ ନାହିଁ । ତା'ପରଦିନ ସେ ସୁରନନ୍ଦନ ଘରେ ପହଞ୍ଚି ଗୌରୀକୁ କହିଲା:

''ଚନ୍ଦ୍ରହାର ଚୋରି ହୋଇ ଯାଇଥିବାରୁ ତୁମେ ବହୁତ ମନଦୁଃଖ କରୁଥିବ। ମେଳାରେ ମୁଁ ତୁମ ଅଜାଣତରେ ହାର ଚୋରାଇ ଥିଲି। ଏବେ ବୁଝି ପାରୁଥିବ ମୁଁ କେତେ ଦକ୍ଷ ଚୋର।''

ଏହାଶୁଣି ଗୌରୀ ଜୋର୍‌ରେ ହସି ଉଠି କହିଲା, ''ମେଳାରେ ତୁମେ କଣ୍ଢେଇବାଲା ବେଶରେ ବସିଥିଲ। ତୁମେ ମୋ ଚନ୍ଦ୍ରହାର ଚୋରାଇଥିଲ। ଏ ସବୁ କଥା ମୁଁ ଜାଣେ। ତୁମେ ସାଧାରଣ ଚୋରି କରିବାକୁ ମଧ୍ୟ ଯୋଗ୍ୟ ନୁହଁ। ଯେଉଁ ଚନ୍ଦ୍ରହାର ଚୋରି କରିଛ, ତାହା ପୁଣି ନକଲି!''

ତା' କଥା ଶୁଣି ଦାମୋଦର ହାତରୁ ହାର ଖସି ପଡିଲା ଓ ସେ ମୁଣ୍ଡ ତଳକୁ କରି ସେଠାରୁ ଚାଲିଆସିଲା।

ଦୁଇ ଦିନ ଯାଏଁ ଗୌରୀ ତା'କୁ ଅପେକ୍ଷା କଲା। କିନ୍ତୁ ସେ ନ ଆସିବାରୁ ସେ ନିଜେ ତା' ପାଖରେ ପହଞ୍ଚିଲା। ଦାମୋଦର ଖଟରେ ଗଡପଡ ହେଉଥିଲା। ଗୌରୀ ହାତରେ ତାଳି ମାରି ତା'କୁ ଉଠାଇ କହିଲା: ''ଶୋଇଛ କି, ରାଜାଙ୍କ ଖଜଣାଖାନା ଲୁଟିବା ପାଇଁ ଯୋଜନା କରୁଛ?''

ଦାମୋଦର ଉଠିପଡି କହିଲା: ''ରାଜାଙ୍କ ଖଜଣା ଆଉ ମୁଁ? ଯିଏ ତୁମ ଗଳାରୁ ଚନ୍ଦ୍ରହାର ଚୋରାଇବାକୁ ସମର୍ଥ ନୁହେଁ, ସିଏ ଏତେ ବଡ କାମ କେମିତି କରିପାରିବ? ଏବେ ମୁଁ ଜାଣି ପାରୁଛି ଯେ ବଡ ବଡ ଚୋରି କରିପାରିବା ଭଳି ବୁଦ୍ଧି ମୋର ନାହିଁ।''

ଗୌରୀ ତା' କଥାରେ ଖୁସି ହୋଇ କହିଲା: ''ଚୋର ଯେତେ ବୁଦ୍ଧିମାନ ହେଉ, ତାର ବୃତ୍ତିରେ ପଦେ ପଦେ ବିପଦ ଅଛି। ଏହା ଏକ କୁତ୍ସିତ କର୍ମ।''

''ତେବେ ଜୀବିକା ପୋଷଣ ପାଇଁ କ'ଣ କରିବି?'' ଦାମୋଦର ମୁହଁ ଶୁଖାଇ କହିଲା। ''ଏଠାରୁ କିଛି ଦୂରରେ ମୋର ମାମୁଁ ଘର। ସେମାନେ ଚାଷବାସ କରି ପେଟ ପୋଷନ୍ତି। ଆମେ ସେଠାକୁ ଚାଲିଯିବା ଓ କାମ କରି ପେଟ ପୋଷିବା। ପରିଶ୍ରମର ଫଳ ବଡ ମଧୁର।'' ଗୌରୀ କହିଲା।

ଦାମୋଦର ତା'କୁ ମୁଗ୍ଧ ହୋଇ ଚାହିଁ କହିଲା: ''ତୁମେ ଠିକ୍ କହୁଛ। ମୁଁ ତୁମ କଥାରେ ରାଜି। କିନ୍ତୁ ତୁମ ବାପା କ'ଣ ରାଜି ହେବେ?''

''ଏଠାକୁ ଆସିବା ପୂର୍ବରୁ ମୁଁ ସବୁ କଥା ତା'ଙ୍କୁ ଜଣାଇଥିଲି। ଚାଲ, ଏବେ ତା'ଙ୍କ ପାଖକୁ ଯିବା।'' ଗୌରୀ କହିଲା।

ଦୁହେଁ ଗୌରୀର ଗ୍ରାମ ଅଭିମୁଖେ ବାହାରି ପଡିଲେ।



ଜହ୍ନମାମୁ ପ୍ରସ୍ତୁତି

# ଅଜେୟ ଗରୁଡ

14

ଚିତ୍ରଃ ଫଣି

ଚନ୍ଦ୍ରପୁରୀରେ ଗୁଜବ ଖେଳଗଲା ଯେ ରାଜା ମହେନ୍ଦ୍ର ବର୍ମାଙ୍କୁ ଅପହରଣ କରା ଯାଇଛି । ନରେନ୍ଦ୍ରଦେବ ଜନୈକ ଦେବବାଣୀ ପାଖରୁ ଜାଣି ପାରିଲେ ଯେ ତାନ୍ତ୍ରିକ ନାଗବନ୍ଧୁ କହି ପାରିବ ରାଜାଙ୍କୁ କେଉଁଠାରେ ଲୁଚାଇ ରଖାଯାଇଛି । ସେ ତାନ୍ତ୍ରିକକୁ ଭେଟିବାକୁ ଗଲେ ଓ ତା'ଙ୍କୁ ମିଳିଥିବା ନିର୍ଦ୍ଦେଶ ସବୁ କଡାକଡି ଭାବେ ପାଳନ କରିବା ଉପରେ ଗୁରୁତ୍ୱ ଦେଲେ ।

ନରେନ୍ଦ୍ର ଦେବ ଅତ୍ୟନ୍ତ କ୍ଷୁବ୍ଧ ଥିଲେ ।



ନରେନ୍ଦ୍ର ଦେବ ଅନ୍ୟ ସମସ୍ତଙ୍କ ଆଗରେ ଦେବବାଣୀ ଘୋଷଣା କଲା ।


ଆଜି ମାନବ ଜାତିର କଲ୍ୟାଣ ନିମନ୍ତେ ଶୁଭବେଳା ଆସିଛି, ଦୁଇ ପ୍ରଭୁଙ୍କର ମିଳନ ଏକ ମହାନ ଦିବସ ଅଟେ !


ଦେବବାଣୀ ନରେନ୍ଦ୍ରଦେବଙ୍କ ଅହଙ୍କାରକୁ ଦ୍ୱିଗୁଣିତ କରିବାକୁ ପ୍ରୟାସ କଲା ।
ମୁଁ ଆପଣଙ୍କର ମହାନ ଭବିଷ୍ୟତ ଦେଖି ପାରୁଛି ପ୍ରଭୁ ! ରାର୍ଜର୍ଷି ନାଗବନ୍ଧୁଙ୍କ ପୂର୍ଣ୍ଣ ସମର୍ଥନ କ୍ରମେ ତୁମେ ରାଜା ହେବ, ଏପରିକି ସମ୍ରାଟ ମଧ୍ୟ !
ଆମର ସ୍ୱାମୀଙ୍କ ଆଗମନକୁ ପ୍ରତୀକ୍ଷା କର । ତୁମେ ଆଗରୁ ଏପରି ଦୃଶ୍ୟ ଦେଖି ନ ଥିବ । ତା'ଙ୍କ ଆଦେଶକୁ ଅପେକ୍ଷା କର ।
ମୁଁ ସବୁ ଆଦେଶ ପାଳନ କରିବି । ଏବେ କ'ଣ କରିବାକୁ ହେବ ?


ଖୁବ୍ ଶୀଘ୍ର ଚାରି ଆଡେ ଧୂଆଁରେ ଭରିଗଲା । ଏକ ବିସ୍ମୟକର ଆକୃତି ମନ୍ଦିର ନିକଟକୁ ଆସିଲା । ତା' ମଥାରେ ଦୁଇଟି ରତ୍ନ ସର୍ପର ଚକ୍ଷୁ ପରି ଚମକୁ ଥିଲା । ତା'ର ପୃଷ୍ଠରେ ଏକ ଲମ୍ୱାବସ୍ତ୍ର ସର୍ପର ଚମଡା ପରି ମନେ ହେଉଥିଲା ।

କମରରେ ଧୋତିକୁ ଛାଡିଦେଲେ ସାରା ଶରୀର ନିବସ୍ତ୍ର ଥିଲା । ଶରୀରରୁ ଜଡିବୁଟି ଲେପର ତୀବ୍ର ଗନ୍ଧ ବାହାରୁଥିଲା । ଗଳାରେ ମାଳା ସଦୃଶ ଦୁଇଟି ସାପ ଝୁଲୁଥିଲେ । ଯେତେବେଳେ ତାନ୍ତ୍ରିକ ନରେନ୍ଦ୍ରଦେବଙ୍କ ସମ୍ମୁଖକୁ ଆସୁଥିଲା, ସେ ଭୟାନକ ଭାବେ ହସୁଥିଲା ।




ମନ୍ଦିର ଦିଗରେ ଯିବା ପୂର୍ବରୁ ତାନ୍ତ୍ରିକ ନିଜର ଜଣେ ଶିଷ୍ୟକୁ ଡାକିଲା ।




... ବିନା ପ୍ରତିବାଦରେ, ଯଦି ତୁମେ ନିଜର ଲକ୍ଷ୍ୟ ପୂରଣ ଚାହୁଁଥାଅ
ଠିକ୍ ଅଛି । ପୋଷାକ ବଦଳାଇ ଏବେ ଆସୁଛି ।


ସେ ଫେରିବା ବେଳକୁ ସମ୍ମୋହିତ ହେବା ପରି ମନେ ହେଉଥିଲେ । ସେ ତାନ୍ତ୍ରିକ ସମ୍ମୁଖରେ ସାଷ୍ଟାଙ୍ଗ ଦଣ୍ଡବତ ହେଲେ ।


ଉଠ, ମୋର ମିତ୍ର, ଆସ ମୋ ପାଖରେ ବସ ଓ ଭକ୍ତିପୂର୍ବକ କ୍ରିୟାକର୍ମ ଦେଖ ।
କ୍ରମଶଃ

# କୁକୁରଙ୍କୁ ସମ୍ମାନ

ଗତକାଲି ରାତିରେ ରାଜା ଛଦ୍ମବେଶ ଧାରଣ କରି ନଗରରେ ବୁଲୁଥିଲେ । ତାଙ୍କୁ ଗୋଟିଏ କୁକୁର କାମୁଡିଦେଲା । ରାଜା ମୁହଁରେ ବହଳିଆ ନିଶ ଦାଢ଼ୀ ଲଗାଇଥିଲେ ଓ ଗୋଟିଏ ବଡ ପଗଡି ପିନ୍ଧିଥିଲେ । ମସ୍ତକରେ ତିଳକ ଲଗାଇଥିଲେ । ଏପରି ଜଣେ ବିଚିତ୍ର ବେଶଧାରୀକୁ ରାତି ଅଧରେ ବୁଲୁଥିବାର ଦେଖି କୁକୁର ତା'କୁ ଏକ ବଡଚୋର ମନେ କଲା । ତେଣୁ ଆକ୍ରମଣ କଲା । ରାଜା ବଡ କଷ୍ଟରେ ଆସି ରାଜଭବନରେ ପହଞ୍ଚିଲେ । ତୁରନ୍ତ ରାଜବୈଦ୍ୟ ଆସି ଜରୁରୀ ଚିକିତ୍ସା କଲେ । ରାଜା ବଡ କଷ୍ଟରେ ଆସି ରାଜଭବନରେ ପହଞ୍ଚିଲେ । ତୁରନ୍ତ ରାଜବୈଦ୍ୟ ଆସି ଜରୁରୀ ଚିକିତ୍ସା କଲେ । ରାଜା ବିପଦମୁକ୍ତ ହେଲେ ।

ସକାଳୁ ସକାଳୁ ସେନାପତି ଏହି ଦୁଃସମ୍ବାଦ ପାଇବା ମାତ୍ର ସେଠାରେ ଆସି ପହଞ୍ଚିଲେ । ସେ ଖୁବ୍ ଭୟଭୀତ ହୋଇ ପଡିଥିଲେ । ରାଜାଙ୍କ ସମ୍ମୁଖରେ ଯୋଡହସ୍ତ ହୋଇ ବିଷର୍ଣ୍ଣ ବଦନରେ ସେ ଠିଆ ହେଲେ । ବିନମ୍ରତାର ସହ କହିଲେ, ''କ୍ଷମା କରିବେ ମହାରାଜ, ଗଳିରେ ଲଗାମଛଡା ହୋଇ ବୁଲୁଥିବା କୁକୁର ମାନଙ୍କୁ ମାରି ପକାଇବାକୁ ମୁଁ ସୈନିକମାନଙ୍କୁ ଆଦେଶ ଦେଇଥିଲି । କିନ୍ତୁ ଭୁଲ୍ ହୋଇଗଲା । ଏବେଠାରୁ ସେ କାମ ମୋତେ ନିଜେ ବୁଝିବାକୁ ପଡିବ । ଏବେଠାରୁ ରାସ୍ତାଘାଟରେ ଆଉ ବୁଲା କୁକୁର ଦେଖିବାକୁ ମିଳିବେ ନାହିଁ ।''

ତା' କଥାରେ ରାଜା ହସି ଉଠି କହିଲେ, ''ତୁମର ବାହୁବଳ ଅଛି ସିନା, ବୁଦ୍ଧିବଳ ନାହିଁ । ମୋତେ ଗୋଟିଏ କୁକୁର କାମୁଡି ଦେଲା ତା'ର ଅର୍ଥ ନୁହେଁ ଯେ ଆମ ରାଜ୍ୟର ସବୁ କୁକୁରଙ୍କୁ ହତ୍ୟା କରାଯିବ । ମୋତେ କାମୁଡି କୁକୁର କିଛି ଅପରାଧ କରି ନାହିଁ । ମୋ ବେଶ ଦେଖି ସେ ମୋତେ ଚୋର ଭାବିଲା ଆଉ କାମୁଡି ଦେଲା । ଦେଖିବାକୁ ଗଲେ ଚୋର ଧରିବା କାମ ହେଉଛି ସୈନିକ ମାନଙ୍କର । ଯେଉଁ କାମ ସୈନିକମାନେ କରି ପାରିଲେ ନାହିଁ, ସେଇ କାମ କୁକୁର କରି ଦେଖାଇଲା । ଏହାର ଅର୍ଥ ହେଉଛି ଆମ ଦେଶରେ ସୈନିକମାନଙ୍କର କାମ କୁକୁର ସମ୍ଭାଳୁଛନ୍ତି । ସୈନିକ ମାନଙ୍କଠାରୁ ଅଧିକ କର୍ତ୍ତବ୍ୟ ନିଷ୍ଠା ସେମାନଙ୍କର ଅଛି । ଏପରି ପରିସ୍ଥିତିରେ ଆମକୁ ସେଇ କୁକୁରମାନଙ୍କୁ ସମ୍ମାନିତ କରିବାକୁ ହେବ । ତାହା ନ କରି ତା'ଙ୍କୁ ଦଣ୍ଡ ଦେବା ଆଦୌ ଉଚିତ ନୁହେଁ ।''

ସେନାଧ୍ୟକ୍ଷ ଅପମାନରେ ମୁଣ୍ଡ ତଳକୁ କଲେ । ରାଜାଙ୍କର ବ୍ୟଙ୍ଗବାଣୀ ତା'ଙ୍କୁ ଖୁବ୍ ବାଧିଲା । ତା' ପରଠାରୁ ରାଜ୍ୟରେ ରାତ୍ରିପ୍ରହରା ବ୍ୟବସ୍ଥାକୁ ସୁଦୃଢ଼ କଲେ ।

- କୁନ୍ତଳା କୁମାରୀ





ଶୀର୍ଷକ ସନ୍ଧାନ କରନ୍ତୁ

# ଫଟୋ ପରିଚୟ ପ୍ରତିଯୋଗିତା





**ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇଚାରି ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ।**

ପରିଚୟୋକ୍ତି ସହ ନିଜ ଠିକଣା ପୋଷ୍ଟକାର୍ଡ଼ରେ ଇଂରାଜୀରେ ଲେଖା ନିମ୍ନ ଠିକଣାରେ ପଠାନ୍ତୁ ।
ଚିତ୍ର ପରିଚୟ ପ୍ରତିଯୋଗିତା, ଚାନ୍ଦାମାମା, ପ୍ଲଟ ନଂ-୮୨
ଡିଫେନ୍ସ ଅଫିସର୍ସ କଲୋନୀ, ଇକାଟୁଥାଙ୍ଗଲ, ଚେନ୍ନାଇ- ୬୦୦୦୯୭
ମଇ ୨୦ ତାରିଖ ସୁଦ୍ଧା ପରିଚୟୋକ୍ତି ଆମ ପାଖରେ ପହଞ୍ଚିବା ଦରକାର । ସର୍ବଶ୍ରେଷ୍ଠ ପ୍ରତିଯୋଗୀଙ୍କୁ ଶହେଟଙ୍କା ପୁରସ୍କାର ଭାବେ ପ୍ରଦାନ କରାଯିବ ।

## ଶୁଭେଚ୍ଛା

ପୂର୍ବ ସଂଖ୍ୟା ଚିତ୍ର ପ୍ରତିଯୋଗିତାର ବିଜେତା
ପ୍ରଶାନ୍ତ ନନ୍ଦ
ଗ୍ରୁପ୍-୧୧ (ଏମ୍.ଭି.ଭି.ପି)
ଆରଆଇଲି, ନୈନି
ଆଲ୍ଲାହାବାଦ-୨୧୧୦୦୮
(ଉତ୍ତରପ୍ରଦେଶ)

### ବିଜୟୀ ପ୍ରତିଯୋଗୀ





୧ମ ଚିତ୍ର : କମନୀୟ ଚାରୁ କଳାକୃତି ନେଇ ସଜେଇଛି ଘର ମୋର ।
୨ୟ ଚିତ୍ର : ବିତରିଛି ମୋର ସୌରଭ ସୁଷମା ଦେଇ ଫୁଲ ଉପହାର ।

ଜହ୍ନମାମୁ ବାର୍ଷିକ ଦେୟ
ଡାକଯୋଗେ ଟ୧୨୦/-

Payment in favour of CHANDAMAMA INDIA LIMITED
No. 82, Defence Officers Colony, Ekkatuthangal, Chennai - 600 097

Printed and Published by B. Viswanatha Reddi at B.N.K. Press Pvt. Ltd., Chennai - 600 026 on behalf of Chandamama India Limited, No. 82, Defence Officers Colony, Ekkatuthangal, Chennai - 600 097. Editor : Viswam

